Licence No. C. R. N. P. 5—Licensed to post without Pre-Payment



# ଉତ୍କଳ ପ୍ରସଙ୍ଗ

ଭାଦ୍ର ୧୯୧୧ ଶକାବ୍ଦ ୪୬ ଭାଗ ୨ୟ ସଂଖ୍ୟା ସେପ୍ଟେମ୍ବର ୧୯୮୯





ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦

Type setting by Conventional, Photo Type Setter and D.T.P. process


ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ ''ଉତ୍କଳ ପ୍ରସଙ୍ଗ''ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟରୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠବୋଲି ଭାବିବା ଉଚିତ ନୁହେଁ ।

**'ଉତ୍କଳ ପ୍ରସଙ୍ଗ'** ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ବି ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ସୂଚୀପତ୍ର

## ୧୯୮୯

# ଆନ୍ତର୍ଜାତିକ ସାକ୍ଷରତା ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା



ସେପ୍‌ଟେମ୍ବର ୮ ତାରିଖ ଆନ୍ତର୍ଜାତିକ ସାକ୍ଷରତା ଦିବସ ଉପଲକ୍ଷେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି :

"ଆମ ଦେଶରେ ବ୍ୟାପକ ନିରକ୍ଷରତା ଯୋଗୁଁ ପ୍ରଗତିର ସୁଫଳ ଗାଁ ଗହଳରେ ଲୋକମାନଙ୍କ ପାର୍ଶ୍ୱରେ ପହଞ୍ଚି ପାରୁନାହିଁ । ସେମାନେ ଜାତୀୟ ସ୍ରୋତରୁ ବିଛିନ୍ନ ହୋଇପଡୁଛନ୍ତି । ସେମାନଙ୍କୁ ସାକ୍ଷର ଓ ସଚେତନ କରି ଜାତି ଗଠନ ଦିଗରେ ସହାୟକ କରାଇବା ଆଜିର ବିଶ୍ୱ ସାକ୍ଷରତା ଦିବସର ଉଦ୍ଦେଶ୍ୟ ।

"ଏକ ଜନମଙ୍ଗଳ ରାଷ୍ଟ୍ର ଭାବରେ ଆମ ଦେଶର ଜାତୀୟ କାର୍ଯ୍ୟକ୍ରମରେ ପ୍ରମୁଖ ସ୍ଥାନ ଅଧିକାର କରିଛି ସାକ୍ଷରତା କାର୍ଯ୍ୟକ୍ରମ । ସାରା ଭାରତରେ ଏହା ଏକ ଗଣ ଆନ୍ଦୋଳନର ରୂପ ନେଇଛି । ସେହି ଉଦ୍ଦେଶ୍ୟରେ ଗଠିତ ହୋଇଛି ଜାତୀୟ ସାକ୍ଷରତା ମିଶନ୍ ୧୯୮୮ ମଇ ୫ ତାରିଖଠାରୁ । ୧୫ ରୁ ୩୫ ବର୍ଷ ବୟସ୍କ ସମସ୍ତ ନିରକ୍ଷରଙ୍କୁ ୧୯୯୫ ମସିହା ସୁଦ୍ଧା ସାକ୍ଷର କରିବା ପାଇଁ ଆମେ ସଙ୍କଳ୍ପବଦ୍ଧ । ଏଥିପାଇଁ ବହୁ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରାଯାଇଛି ।

"ଆମ ରାଜ୍ୟରେ ୧୫ ରୁ ୩୫ ବର୍ଷ ବୟସ ସୀମା ମଧ୍ୟରେ ପ୍ରାୟ ୪୪ ଲକ୍ଷ ନିରକ୍ଷର ଅଛନ୍ତି । ଜନସଂଖ୍ୟା ବୃଦ୍ଧି ସହିତ ପ୍ରତିବର୍ଷ ସେମାନଙ୍କର ସଂଖ୍ୟା ଆଉ କିଛି ବଢ଼ିବ । ନିରକ୍ଷର ସଂଖ୍ୟାକୁ ହ୍ରାସ କରିବା ପାଇଁ ଯୋଜନାବଦ୍ଧ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହାକୁ ଠିକ୍ ଭାବରେ ପରିଚାଳନା କରାଯାଇ ପାରିଲେ ଓ ଜନ ସହଯୋଗ ମିଳିଲେ, ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଆମେ ନିରକ୍ଷରଙ୍କୁ ପୂର୍ଣ୍ଣ ସାକ୍ଷର କରିପାରିବା ।

"ଆଜିର ପୁଣ୍ୟ ତିଥିରେ ରାଜ୍ୟବାସୀଙ୍କୁ ମୋର ନମ୍ର ନିବେଦନ, ସେମାନେ ସାକ୍ଷରତା ପ୍ରସାର କାର୍ଯ୍ୟକ୍ରମରେ ନିଜକୁ ସାମିଲ କରି ଏକ ଜାତୀୟ କର୍ତ୍ତବ୍ୟ ସାଧନ କରନ୍ତୁ ଏବଂ ଜାତିର ଏହି ମହାନ୍ ସଙ୍କଳ୍ପକୁ ସଫଳ କରନ୍ତୁ ।"



# ଗୁରୁଦିବସ ଉପଲକ୍ଷେ ଶିକ୍ଷାମନ୍ତ୍ରୀଙ୍କ ବାର୍ତ୍ତା

ସେପ୍‌ଟେମ୍ବର ୫ ତାରିଖ ଗୁରୁଦିବସ ଉପଲକ୍ଷେ ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ର ନିମ୍ନୋକ୍ତ ବାର୍ତ୍ତା ଦେଇଛନ୍ତି :

"ଚଳିତ ବର୍ଷ ସାରା ଦେଶରେ ଏ ଜାତିର ମହାନ୍ ଗୁରୁ ସ୍ୱର୍ଗତ୍ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଜନ୍ମ ଶତବାର୍ଷିକୀ ସେପ୍‌ଟେମ୍ବର ୫ ତାରିଖରେ ପାଳନ କରାଯାଉଛି । ଏହି ଜନ୍ମ ଶତବାର୍ଷିକୀ ତଥା ଅଷ୍ଟାବିଂଶତିତମ ଗୁରୁଦିବସ ପାଳନ ଉପଲକ୍ଷେ ମୁଁ ରାଜ୍ୟର ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

"ମାନବ ଜାତିର ଇତିହାସରେ ଶିକ୍ଷା ଏକ ଗୁରୁତ୍ୱପୂର୍ଣ୍ଣ ଆସନ ଗ୍ରହଣ କରିଆସିଛି । ଏକ ସୁସ୍ଥ ସାମାଜିକ ପରମ୍ପରା, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ କର୍ତ୍ତବ୍ୟପରାୟଣତା କେବଳ ଶିକ୍ଷାରୁ ହିଁ ମିଳିଥାଏ । ବୈଦିକ ଯୁଗରୁ ଭାରତୀୟ ଗୁରୁମାନେ ନିଜର ଆଦର୍ଶବୋଧ ଓ କର୍ତ୍ତବ୍ୟପରାୟଣତା ଦ୍ୱାରା ହିଁ ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଥିଲେ । ଆଜିର ବିଜ୍ଞାନ ଯୁଗରେ ପୃଥିବୀର ସମସ୍ତ ଦେଶ ଆଗେଇ ଚାଲିଥିବାବେଳେ ଆମକୁ ଏ ଦେଶର ଭବିଷ୍ୟତ ନାଗରିକମାନଙ୍କୁ ସୁସଙ୍ଗଠିତ, ଶୃଙ୍ଖଳିତ ଓ କର୍ତ୍ତବ୍ୟପରାୟଣ କରି ଗଢ଼ି ତୋଳିବାକୁ ହେବ ଅନ୍ୟଥା ଅଗ୍ରଗତି ବ୍ୟାହତ ହେବ । ତେଣୁ ଏ ସମସ୍ତ ଗୁରୁ ଦାୟିତ୍ୱ କେବଳ ଶିକ୍ଷକମାନଙ୍କୁ ହିଁ ତୁଲାଇବାକୁ ହେବ । ଅଜ୍ଞାନ ରୂପକ ଅନ୍ଧକାର ମଧ୍ୟରେ ଗୁରୁ ହିଁ ଆଲୋକବର୍ତ୍ତିକା । ବୈଦିକ ଯୁଗରୁ ଗୁରୁ ପୂଜା ଆମ ଦେଶରେ ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଛି । ଗୁରୁଙ୍କର ଜ୍ଞାନ, ଚରିତ୍ର, କର୍ତ୍ତବ୍ୟପରାୟଣତା ଓ ଶୃଙ୍ଖଳାବୋଧ ଛାତ୍ର ଛାତ୍ରୀମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଥାଏ । ଦେଶର ଭାବି ବଂଶଧରମାନଙ୍କୁ ଦୃଷ୍ଟିରେ ରଖି ପ୍ରଚଳିତ ଶିକ୍ଷା ଧାରାର ସମୀକ୍ଷା କରାଯାଇ ଏକ ନୂତନ ଜାତୀୟ ଶିକ୍ଷାନୀତି ପ୍ରଣୟନ କରାଯାଇଛି । ଶିକ୍ଷକମାନଙ୍କର ଗଭୀର ଆନ୍ତରିକତା ଓ କର୍ତ୍ତବ୍ୟନିଷ୍ଠା ଦ୍ୱାରା ହିଁ ଜାତୀୟ ଶିକ୍ଷାନୀତିର ସଫଳ ରୂପାୟନ ହୋଇପାରିବ ।

"ଆଜିର ଏହି ପବିତ୍ର ଦିନରେ ଶିକ୍ଷକ ସମାଜ ନୂତନ ଶିକ୍ଷାନୀତିର ସଫଳ ରୂପାୟନ ତଥା ଦେଶର ଭାବି ବଂଶଧରମାନଙ୍କୁ ଉପଯୁକ୍ତ ଭାବରେ ଗଢ଼ି ତୋଳିବା ପାଇଁ ନିଜକୁ ପ୍ରସ୍ତୁତ କରିବା ସଙ୍ଗେସଙ୍ଗେ ଗଭୀର କର୍ତ୍ତବ୍ୟନିଷ୍ଠା ଓ ଉନ୍ନତ ଜୀବନଧାରା ପ୍ରଦର୍ଶନ କରି ଜାତୀୟ ଲକ୍ଷ୍ୟ ସାଧନ ଦିଗରେ ନିଜକୁ ଉତ୍ସର୍ଗ କରିବେ ବୋଲି ମୋର ବିଶ୍ୱାସ ।"

## ମୋ ଦୃଷ୍ଟିରେ ....

"ଉତ୍କଳ ପ୍ରସଙ୍ଗ"ର ସେପ୍‌ଟେମ୍ବର ୧୯୮୯ ସଂଖ୍ୟା ତାର ପାଠକ ପାଠିକାମାନଙ୍କୁ ସହୃଦୟ
ଅଭିନନ୍ଦନ ଜଣାଇ ଆତ୍ମପ୍ରକାଶ କରୁଛି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ "ସଦାଗ୍ରତର ଦେହଧାରୀ ପୁରୁଷ ଜଳୌକା
ବାବା"ଙ୍କ ସମ୍ବନ୍ଧରେ ଗତ ବୁଦ୍ଧ ଜୟନ୍ତୀ ଦିନ ଯେଉଁ ଭାଷଣ ଦେଇଥିଲେ, ତାର ଏକ ବିବରଣ ଏହି ସଂଖ୍ୟାରେ
ପ୍ରକାଶ ପାଇଛି । ଜଳୌକା ବାବା ବର୍ତ୍ତମାନ ଆମ ଭିତରେ ଉପସ୍ଥିତ । ସେହି ମହାପୁରୁଷଙ୍କ ଜୀବନୀ
ଆମ ପାଠକ ପାଠିକାମାନଙ୍କୁ ସଦାଗ୍ରତର ଏକ ସ୍ମରଣୀୟ ଅଧ୍ୟାୟ ସ୍ମରଣ କରାଇ ଦେବ ବୋଲି ଆମେ ଆଶା
କରୁଛୁ ।

ଏ ସଂଖ୍ୟାରେ ଓଡ଼ିଶାର ଶିକ୍ଷା ମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ଜାତୀୟ ଶିକ୍ଷାନୀତି ସମ୍ପର୍କରେ
ବିଶଦ ଆଲୋଚନା କରିଛନ୍ତି । କୃଷି ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରାଙ୍କର "ଆମ କୃଷି ଓ କୃଷକ" ପ୍ରବନ୍ଧ,
ଓଡ଼ିଶାର ଗତ ଦଶନ୍ଧିରେ କୃଷିର ଉନ୍ନତି ନିମନ୍ତେ କୃଷକମାନଙ୍କୁ ଓଡ଼ିଶା ଶାସନର ସମ୍ୟକ୍ ସାହାଯ୍ୟ ବିଷୟର
ଅବତାରଣା କରିଅଛି । ଡକ୍ଟର୍ ଶ୍ରଦ୍ଧାକର ସୁପକାର ଜଣେ ବିଶିଷ୍ଟ ରାଜନୀତିଜ୍ଞ ଓ ଜନଶିକ୍ଷା ସମ୍ବନ୍ଧରେ
ତାଙ୍କର ଲିଖିତ ପ୍ରବନ୍ଧ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବ । ଓଡ଼ିଶାର ଦାରିଦ୍ର୍ୟ ସମ୍ବନ୍ଧରେ ଏବେ
ଅନେକ ବାଦାନୁବାଦ ଚାଲିଛି । ସେ ବିଷୟରେ ଓଡ଼ିଶା ଯୋଜନା ବୋର୍ଡ଼ର ଉପାଧ୍ୟକ୍ଷ, ପ୍ରସିଦ୍ଧ ଅର୍ଥନୀତିଜ୍ଞ
ଡକ୍ଟର୍ ବୈଦ୍ୟନାଥ ମିଶ୍ରଙ୍କ ମତାମତ ଏହି ସଂଖ୍ୟାରେ ପ୍ରକାଶ ପାଇଛି । ଓଡ଼ିଶାର ଜଣେ ପ୍ରସିଦ୍ଧ
ଗଣନାଟ୍ୟକାର ବୈଷ୍ଣବ ପାଣିଙ୍କ ସମ୍ପର୍କରେ ଓଡ଼ିଶାର ଜଳସେଚନ ଓ ବିଦ୍ୟୁତ୍ ବିଭାଗର ମନ୍ତ୍ରୀ, ସୁସାହିତ୍ୟିକ
ଶ୍ରୀ ମତ୍‌ଲୁବ୍ ଅଲୀଙ୍କର ପ୍ରବନ୍ଧ ଏହି ସଂଖ୍ୟାର ଶୋଭାବର୍ଦ୍ଧନ କରିଅଛି । ଜାତି ଓ ଧର୍ମ ଯେତେବେଳେ
ଭାରତୀୟ ଚେତନାକୁ ଭିନ୍ନ ଭିନ୍ନ କରି ଦେବାକୁ ବସିଛି, ସେହି ସମ୍ପର୍କରେ ଅଧ୍ୟାପକ ଶତ୍ରୁଘ୍ନ ନାଥଙ୍କ "ରାଷ୍ଟ୍ର
ଚିନ୍ତନ ଓ ଚେତନା" ଆମ ପାଠକଙ୍କୁ ଚିନ୍ତାର ସାମଗ୍ରୀ ଯୋଗାଇ ଦେବ ବୋଲି ଆଶା କରୁଅଛୁ ।

ଉତ୍କଳ ପ୍ରସଙ୍ଗ ତାର ପ୍ରକାଶିତ ପ୍ରବନ୍ଧମାନଙ୍କରେ ଉଚ୍ଚମାନର ସାହିତ୍ୟ ସୃଷ୍ଟି କରିବା ନିମନ୍ତେ ଯେଉଁ
ପ୍ରୟାସ ଓ ପ୍ରଚେଷ୍ଟା ଚଳାଇଅଛି ତାର ଏକ ସଫଳ ରୂପାୟନ ଏହି ସଂଖ୍ୟାରେ ମଧ୍ୟ ପାଠକ ପାଠିକାମାନେ
ଦେଖି ପାରିବେ ବୋଲି ଆମର ଆଶା ।"

# ସଦାଗୁରର ଦେହଧାରୀ ପୁରୁଷ

# ଜଲୌକା ବାବା

*ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ*

ଆଜି ଆମମାନଙ୍କର ସମସ୍ତଙ୍କ ପାଇଁ ଗୋଟିଏ ଆନନ୍ଦର ଦିନ ଯେ ବାବା (ଜଲୌକା ବାବା)ଙ୍କ ଉପସ୍ଥିତିରେ ଆଜି ତାଙ୍କର ଚନ୍ଦନ ଉତ୍ସବ ଧୋରେ ପାଳନ କରାଯାଉଛି। ଆଜି ହେଉଛି ଗୋଟିଏ ପବିତ୍ର ଦିନ—ବାବାଙ୍କ ସହିତ ଯେଉଁମାନେ ସମ୍ପୃକ୍ତ ସେମାନଙ୍କର ଚନ୍ଦନ ଉତ୍ସବ, ଆଜି ବୁଦ୍ଧ ପୂର୍ଣ୍ଣିମା, ଏଇ ଦିନ ବୁଦ୍ଧଙ୍କର ଜନ୍ମ, ଜ୍ଞାନ ପ୍ରାପ୍ତି ଓ ନିର୍ବାଣ। ଆଜିର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଯେ ଯେଉଁ ସତ୍ୟ ସେବାମଣ୍ଡଳ ବାବାଙ୍କ ପରସ୍ତୁ ପ୍ରତିଷ୍ଠା କରାଯାଇଥିଲା, ସେ ମଣ୍ଡଳର ଆଜି ରଜତ ଜୟନ୍ତୀ ଉତ୍ସବ, ତେଣୁ ଏ ଗୋଟିଏ ଅତି ପବିତ୍ର ଦିନ ଏବଂ ଅତ୍ୟନ୍ତ ସମାରୋହରେ ଆପଣମାନେ ଏହା ପାଳନ କରୁଥିବା ଯୋଗୁଁ ଆପଣ ସମସ୍ତଙ୍କୁ ମୁଁ ଧନ୍ୟବାଦ ଦେଉଛି। ବାବାଙ୍କୁ ଏବଂ ଆପଣ ସମସ୍ତଙ୍କୁ ମୋର ନମସ୍କାର।

ଆପଣମାନେ ସତ୍ୟ ସେବା ମଣ୍ଡଳ ସମ୍ପର୍କରେ ପଢ଼ିଲେ, ବାବାଙ୍କର ବାଣୀ ମଧ୍ୟ ପଢ଼ିଲେ, ଯାହାର ଉଦ୍ଦେଶ୍ୟ ହେଉଛି ସତ୍ୟର ପ୍ରତିଷ୍ଠା। ମହାତ୍ମା ଗାନ୍ଧୀଙ୍କି ଯେତେବେଳେ ପଚରାଗଲା—ଈଶ୍ୱର କ'ଣ? ଈଶ୍ୱର କିଏ? ସେତେବେଳେ ସେ କହିଥିଲେ, ଈଶ୍ୱର ହେଉଛନ୍ତି ସତ୍ୟ। ତେଣୁ ସତ୍ୟ ଉପରେ ସବୁବେଳେ ଈଶ୍ୱରଙ୍କୁ ବନ୍ଦନା କରାଯାଇଛି, କୀର୍ତ୍ତନ କରାଯାଇଛି ଏବଂ ସେଇ ସତ୍ୟ ବା ସଦାଗୁରର ପ୍ରତିଷ୍ଠା କରିବା ପାଇଁ ଯୁଗେ ଯୁଗେ ମହାପୁରୁଷମାନେ, ସଦ୍‌ଗୁରୁମାନେ ଏ ସଂସାରରେ ଅବତୀର୍ଣ୍ଣ ହୋଇଛନ୍ତି। ଧର୍ମ ଅନ୍ୟ କିଛି ନୁହେଁ, ଧର୍ମ ହେଉଛି ସଦ୍ ଆଚରଣ ଓ ସତ୍‌ଶିକ୍ଷା। "ଆଗ୍ରର ପ୍ରଭବୋଧର୍ମଃ—ଧର୍ମସ୍ୟ ପ୍ରଭୁରଚ୍ୟୁତଃ"—ଆଗ୍ରର ଦ୍ୱାରା ହିଁ ଧର୍ମର ଜନ୍ମ ଏବଂ ଧର୍ମ ରୂପରେ ଯେଉଁ ଅଚ୍ୟୁତଙ୍କର ଆବିର୍ଭାବ ତାଙ୍କର ଧ୍ୱଂସ ନାହିଁ। ତେଣୁ ଧର୍ମ ଆଗ୍ରରକୁ ଅଙ୍ଗୀକାର କରିଥାଏ। ଯଦି ଆମେ ସଦାଗ୍ରୁରୀ ହେବା ତାହାହେଲେ ସେହି ସଦାଗ୍ରୁର ଦ୍ୱାରା ହିଁ ଆମର ଭଗବତ୍ ପ୍ରାପ୍ତି ହେବ।

ସେଇ ଦୃଷ୍ଟିରୁ ବ୍ୟକ୍ତିବିଶେଷ ସଦାଗ୍ରୁର କ'ଣ ତାହା ଜାଣନ୍ତି ନାହିଁ। ଆମର କେଉଁଟା ଠିକ୍ ବାଟ କେଉଁଟା ଭୁଲ୍ ବାଟ ତାହା ଜାଣିବା ଆମମାନଙ୍କ ପକ୍ଷରେ ବଡ଼ କଷ୍ଟ। ସେଥିପାଇଁ ସତ୍ୟ କ'ଣ ବୋଲି ଯେତେବେଳେ ପଚରା ଯାଇଛି ତାହାର ଉତ୍ତରରେ କୁହାଯାଇଛି—

"ଶ୍ରୁତିର୍ ଭିନ୍ନା ସ୍ମୃତୟଶ୍ଚ ଭିନ୍ନା
ନାନା ମୁନୀନାଂ ମତୟୋ ବିଭିନ୍ନାଃ
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ....."

ଗୁହା ଭିତରେ ଧର୍ମର ତତ୍ତ୍ୱ ଗୁପ୍ତ ଅଛି। ଏହାହିଁ ସତ୍ୟ। ଏହାକୁ କେହି ଜାଣି ପାରିବେ ନାହିଁ। କେମିତି ଜାଣିବେ?

"ମହାଜନୋ ଯେନ ଗତଃସ ପନ୍ଥାଃ"

ତେଣୁ ମହାଜନମାନେ ଯେଉଁ ବାଟରେ ଗ୍ରଲନ୍ତି ତାକୁ ଦେଖିକରି ସେଇ ବାଟରେ ଗ୍ରଲିବା କଥା।

ଆମମାନଙ୍କର ପରମ ସୌଭାଗ୍ୟ ଯେ, ବାବା ଆଜି ଆମମାନଙ୍କ ଭିତରେ ଅଛନ୍ତି। ସଦାଗ୍ରୁରର ସେହି ଦେହଧାରୀ ପୁରୁଷ, ଯେ ଆମମାନଙ୍କ ଭିତରେ ବର୍ତ୍ତମାନ, ତାହାଙ୍କର ବାଟ ଆମ ସମସ୍ତଙ୍କ ପକ୍ଷରେ ପ୍ରଦର୍ଶିତ ମାର୍ଗ।

ଭଗବାନଙ୍କୁ ପିଥାସଳଖ କେହି କେବେ ଲାଭକରି ପାରେନାହିଁ ଯେତେ କଷ୍ଟ କଲେ ମଧ୍ୟ। ସଦ୍‌ଗୁରୁଙ୍କ ଦ୍ୱାରାହିଁ ଈଶ୍ୱରଙ୍କୁ ଲାଭ କରାଯାଇ ପାରିବ—ଏହା ଆମ ଧର୍ମରେ ଅଛି, ସନାତନ ଧର୍ମର ଏହା ହେଉଛି ଉପଦେଶ। ସଦ୍‌ଗୁରୁଙ୍କ ବିନା କେବେହେଲେ ଆମେ ଈଶ୍ୱର ଲାଭ କରିପାରିବା ନାହିଁ। ସେଥିପାଇଁ ଗୋସ୍ୱାମୀ ତୁଳସୀଦାସ ତାଙ୍କର ହନୁମାନ ଗ୍ରଳିଶାରେ ପ୍ରଥମ ଗ୍ରରିଧାଡ଼ିରେ ଏବଂ ତାଙ୍କ ରଚନାରେ ବିଭିନ୍ନ ସ୍ଥାନରେ ବାରମ୍ବାର ଯେଉଁ ଗୋଟିଏ କଥା ଲେଖିଛନ୍ତି, ତାହା ହେଲା—"ଶ୍ରୀଗୁରୁ ଚରନ–ସରୋଜରଜ ନିଜମନୁ ମୁକୁର ସୁଧାରି। ବରନଉ ରଘୁବର ବିମଲଜସୁ ଜୋ ଦାୟକୁ ଫଲଗ୍ରରୀ।" ଯଦି ତୁମେ ଚତୁର୍ବର୍ଗ ଫଳ ଦେଉଥିବା ରଘୁବରଙ୍କୁ ପାଇବାକୁ ଇଚ୍ଛା କରୁଛ, ତାହାହେଲେ ପ୍ରଥମେ ତୁମର ହୃଦୟ ଦର୍ପଣରେ ଲାଗିଥିବା ମଇଳା ସବୁକୁ ସଫା କରିବାକୁ ପଡ଼ିବ। କେଉଁଥିରେ ସଫା କରିବ କାଏ? "ଶ୍ରୀଗୁରୁ ଚରନ ସରୋଜ ରଜ"—ଶ୍ରୀଗୁରୁଙ୍କର ପାଦପଦ୍ମର ଯେଉଁ ଧୂଳି ତାକୁ ନେଇ ସେଇଥିରେ ହିଁ ହୃଦୟ ଦର୍ପଣକୁ ସଫା କରିବାକୁ ହେବ। ତେବେ ଯାଇ ତୁମେ ବିମଳଯଶ ରଘୁବରଙ୍କୁ ଲାଭ କରିବ ଏବଂ ଚତୁର୍ବର୍ଗ ଫଳ ଲାଭ ସମ୍ଭବ ହୋଇପାରିବ। ସେଥିପାଇଁ ଆମର ଶାସ୍ତ୍ର, ପୁରାଣ, ଇତିହାସ ସବୁଥିରେ ଗୁରୁଙ୍କୁ ସର୍ବଶ୍ରେଷ୍ଠ ସ୍ଥାନ ଦିଆଯାଇଛି। ଆଜି ଏଠାରେ ପ୍ରାର୍ଥନାରେ ପାଠ କରାଗଲା—ଅଜ୍ଞାନ ଅନ୍ଧକାର ଭିତରେ ଗୁରୁ ପଥ ଦେଖାନ୍ତି। ଆମେ ଅନ୍ଧ ଭଳି ସଂସାରରେ ଅଜ୍ଞାନ ଅନ୍ଧକାରରେ ବୁଲୁଛୁ। ଆଖିରେ ଚଷମା ଲଗାଇଲେ ଦୃଷ୍ଟି ଶକ୍ତିହୀନ ବ୍ୟକ୍ତି ଯେପରି ଦେଖିପାରେ, ଗୁରୁ ସେହିପରି ଜ୍ଞାନର ଶଳାକା ଦ୍ୱାରା ଆଖି ଖୋଲିଦେଇ ପାରନ୍ତି।

ଗୁରୁଙ୍କର ମହିମା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଭଗବାନଙ୍କ ପାଇଁ ଯାହା କୁହାଯାଉଛି, ଗୁରୁଙ୍କ ପାଇଁ ଠିକ୍ ସେହିପରି କୁହାଯାଉଛି । ଭଗବାନଙ୍କ ଭଳି ଗୁରୁଙ୍କ ମହିମା ମଧ୍ୟ ଅବର୍ଣ୍ଣନୀୟ । ସେ ମଧ୍ୟ ସେହିପରି ଅସୀମ, ତାଙ୍କୁ କେହି କଳନା କରିପାରିବେ ନାହିଁ— "ଅଖଣ୍ଡମଣ୍ଡଳାକାରଂ" । ମଣ୍ଡଳାକାର ଅର୍ଥାତ୍ ସାଧାରଣ ଗୋଲାକାର ବସ୍ତୁଟିଏ ଯେତେବେଳେ ଆମେ ଦେଖୁ, ସେତେବେଳେ ତାର ଆରମ୍ଭ କେଉଁଠି ଓ ଶେଷ କେଉଁଠି, କେହି କହିପାରିବେ ନାହିଁ । ମଣ୍ଡଳଟା ଯେ ବଳା ସେ କେଉଁଠୁ ଆରମ୍ଭ ହେଲା, କେଉଁଠି ଶେଷ ହେଲା ତାହା କହିବା ମଧ୍ୟ ସମ୍ଭବ ନୁହେଁ । ତାର ଚାରିପାଖ ଗୋଟିଏ ଭଳି ଜଣାପଡ଼େ । ସେହିପରି ଗୁରୁଙ୍କର ଯେଉଁ ମହିମା ସେ ହେଉଛି ଅଖଣ୍ଡମଣ୍ଡଳାକାର—ତସ୍ମୈ ଶ୍ରୀଗୁରବେ ନମଃ । ତେଣୁ ସଦ୍‌ଗୁରୁଙ୍କୁ ବାରମ୍ବାର ଭକ୍ତିର ସହିତ ନମସ୍କାର ।

ଆମେ ସଦ୍‌ଗୁରୁ ଲାଭ କରିବା ମଧ୍ୟ ଏମିତି କିଛି ସହଜ କଥା ନୁହେଁ । କିନ୍ତୁ ଦିନେ ନା ଦିନେ ସଦ୍‌ଗୁରୁ ଲାଭ କରାଯାଇପାରେ । ବାବା ବର୍ତ୍ତମାନ ଆପଣମାନଙ୍କୁ କହିଛନ୍ତି, ତାଙ୍କ ବାର୍ତ୍ତାରେ ପାଠ କରାଗଲା—ଅନେକ ମଠ ମନ୍ଦିର ଅଛି, ଅନେକ ଗୁରୁ ମଧ୍ୟ ଅଛନ୍ତି । ବିଭିନ୍ନ ପ୍ରକାର ପୋଷାକ ପିନ୍ଧି ସେମାନେ ବୁଲୁଛନ୍ତି । ଲୋକମାନଙ୍କୁ ଆକର୍ଷଣ କରିବା ପାଇଁ ଚେଷ୍ଟା କରୁଛନ୍ତି । ଅନେକ ପ୍ରବଞ୍ଚକ ମଧ୍ୟ ସଂସାରରେ ଅଛନ୍ତି କିନ୍ତୁ ସଦ୍‌ଗୁରୁ ଲାଭ କରିବା ହେଉଛି ଅତ୍ୟନ୍ତ କଷ୍ଟ । ତେଣୁ ଯେପରି ଗୁରୁ ତାଙ୍କ ନିଜର କୃପା ହେଲେ ଯାଇଁ ତାଙ୍କୁ ଲାଭ କରାଯାଇପାରେ । ଅନେକ ସମୟରେ ଆମେ ଭାବୁ, ଯିଏ ଅଲୌକିକତା ପ୍ରଦର୍ଶନ କରନ୍ତି ସେ ହେଉଛନ୍ତି ଗୁରୁ । ଅଲୌକିକତା ପ୍ରଦର୍ଶନ ନକଲା ପର୍ଯ୍ୟନ୍ତ ସେ ଗୁରୁ ବୋଲି ଆମେ ବିଶ୍ୱାସ କରୁନାହିଁ । ଛୋଟିଆ କଥାଟିଏ କହିବି, ଥରେ ଗୌତମ ବୁଦ୍ଧ ତାଙ୍କ ଶିଷ୍ୟମାନଙ୍କ ସାଙ୍ଗରେ ଯାଉଥିଲେ । ବାଟରେ ନଈଟିଏ ପଡ଼ିଲା । ନଦୀରେ ବଢ଼ି ହୋଇଛି । ଖୁବ୍ ଜୋରରେ । ସେ ପଟକୁ ଯାଇ ହଉନାହିଁ । ନାଉରୀ ଆରପଟକୁ ଡଙ୍ଗା ନେଇ ଯାଇଛି । ତେଣୁ ସେ ଶିଷ୍ୟମାନଙ୍କ ସହ ଅପେକ୍ଷା କରି ରହିଲେ । ଏହି ସମୟରେ ଆଉ ଜଣେ ସନ୍ନ୍ୟାସୀ ଆସିଲେ । ସେ କାହାରିକୁ ଅପେକ୍ଷା ନକରି ନଈର ବଢ଼ି ପାଣି ଉପରେ ଚାଲିଚାଲି ଆରପଟକୁ ଚାଲିଗଲେ । ବୁଦ୍ଧଙ୍କ ଶିଷ୍ୟମାନେ ବୁଦ୍ଧଙ୍କୁ ପଚାରିଲେ, "ଯଦି ଜଣେ ସାମାନ୍ୟ ସନ୍ନ୍ୟାସୀଙ୍କର ଏତେ ଶକ୍ତି ଯେ ସେ ପାଣି ଉପରେ ଚାଲିଗଲେ, ତେବେ ଆପଣ ଶିଷ୍ୟମାନଙ୍କ ସହ କାହିଁକି ଏତେ ସମୟ ଅପେକ୍ଷା କରିଛନ୍ତି । ଆପଣ ଶିଷ୍ୟମାନଙ୍କୁ ସାଙ୍ଗରେ ନେଇ ନଈର ପାଣି ଉପରେ ଚାଲିଯାଉନାହାନ୍ତି ? ଉତ୍ତର ପାଇବା ପାଇଁ ଗୌତମ ବୁଦ୍ଧ ସମସ୍ତଙ୍କୁ ଅପେକ୍ଷା କରିବାକୁ କହିଲେ । ଏହି ସମୟରେ ନାଉରୀ ଆସିଗଲା । ଆଉ ସମସ୍ତଙ୍କୁ ଡଙ୍ଗାରେ ନଈ ପାର କରିଦେଲା । ସେତେବେଳେ ଘାଟ ମାହାସୁଲ ଯାହା ଥିଲା— ପଇସାଟିଏ ହୋଇଥିବ । ତେଣୁ ବୁଦ୍ଧ କହିଲେ, ପାଣି ଉପରେ ଚାଲିକରି ଯେଉଁ ସନ୍ନ୍ୟାସୀ ନଈ ପାର ହୋଇଗଲେ ତାଙ୍କ ସିଦ୍ଧିର ମୂଲ୍ୟ ହେଉଛି ଏଇ ପଇସାଟିଏ । ଅଲୌକିକତା ପ୍ରଦର୍ଶନ କରିବା ଗୁରୁଙ୍କ ଧର୍ମ, ଏମିତି କଥା ଆମ ଭାରତୀୟ ସଂସ୍କାରରେ ନାହିଁ । କିନ୍ତୁ ଗୁରୁ ଏପରି ଭାବରେ ସାହାଯ୍ୟ କରନ୍ତି, ତାହା ଭଳି ଅଲୌକିକ କଥା କିଛି ସଂସାରରେ ନଥିବ । ଆପଣମାନଙ୍କ ମନର କଥା ବୁଝି ସେ କିଭଳି ଆପଣଙ୍କୁ ସମ୍ପୂର୍ଣ୍ଣ ଭାବରେ ନିଜର କରି ନିଅନ୍ତି ତାହା ଆପଣମାନେ ବୁଝିପାରିବେ ନାହିଁ ।

ଶ୍ରୀମଦ୍ ଭଗବତ୍ ଗୀତାରେ ଅର୍ଜୁନଙ୍କର ଅବସ୍ଥା ଏପରି ହୋଇଥିଲା । ସେ କହିଲେ—"ମୁଁ ହେଉଛି କେବଳ ଶିଷ୍ୟ । ମୁଁ ତୁମଠାରେ ସମ୍ପୂର୍ଣ୍ଣ ଶରଣାଗତ । ମୋତେ ତୁମେ ରକ୍ଷା କର ।" ଅର୍ଜୁନ ବହୁତ ପଚାରିଲେ, ଯେତେ ପାରିଲେ ସେତେ ପ୍ରଶ୍ନ କଲେ । ସବୁ ପ୍ରଶ୍ନର ଉତ୍ତର ମଧ୍ୟ ପାଇଲେ । କିନ୍ତୁ ସେଥିରେ ସେ ସନ୍ତୁଷ୍ଟ ହେଲେ ନାହିଁ । ଯେତେବେଳେ ସବୁ ପ୍ରଶ୍ନୋତ୍ତର ସରିଗଲା, ସେତେବେଳେ ଅର୍ଜୁନ କହିଲେ, "ମୁଁ ତୁମର ଶିଷ୍ୟ । ମୋତେ ତୁମେ ଗ୍ରହଣ କର । ମୋର କିଛି ନିଜର ନାହିଁ । ସମ୍ପୂର୍ଣ୍ଣ ଭାବରେ ମୁଁ ନିଜକୁ ସମର୍ପଣ କରୁଛି ।"

ସମର୍ପଣ ଭାବ ହେଉଛି ସବୁଠାରୁ ବଡ଼ । ସେଇ ସମର୍ପଣ ଭାବ ଯାହାର ସବୁଠାରୁ ବେଶୀ ଥିବ ସେ ପ୍ରକୃତ ଶିଷ୍ୟ ହୋଇପାରିବ ଗୁରୁଙ୍କର । ଗୁରୁଙ୍କ ପାଇଁ ମଧ୍ୟ ସେମିତି ଶିଷ୍ୟ ମିଳିବା କଷ୍ଟ । ସଦ୍‌ଗୁରୁ ମିଳିବା ଯେମିତି କଷ୍ଟ, ଗୁରୁଙ୍କ ପାଇଁ ଭଲ ଶିଷ୍ୟ ମିଳିବା ମଧ୍ୟ ସେହିପରି କଷ୍ଟ । କୃଷ୍ଣଙ୍କ ପାଇଁ ଅର୍ଜୁନ ମିଳିଲେ କେତେ କଷ୍ଟରେ, ରାମକୃଷ୍ଣ ପରମହଂସଙ୍କ ପାଇଁ ବିବେକାନନ୍ଦ କିଭଳି ମିଳିଲେ ତାହା ଆପଣମାନେ ଜାଣିଛନ୍ତି । ତେଣୁ ଆମେ ସମସ୍ତେ ଶିଷ୍ୟ ହେବାପାଇଁ ଚେଷ୍ଟା କରିବା । ନିଜକୁ ସମ୍ପୂର୍ଣ୍ଣ ଭାବରେ ସଦ୍‌ଗୁରୁଙ୍କ ପାଖରେ ସମର୍ପଣ କରି ପାରିଲେ ସଦ୍‌ଗୁରୁ ଆମକୁ ଆଦରି ନେବେ ।

ଆର୍ଯ୍ୟ ଧର୍ମର କଥା ଏଠାରେ କୁହାଗଲା । ଆର୍ଯ୍ୟ ଧର୍ମ ଆମକୁ ଏଇ ବାଟ ଦେଖାଇଛି । ସତ୍ୟର ବାଟ ଆମକୁ ଦେଖାଇଛି । ସଦାଚାରର ବାଟ ଆମକୁ ଦେଖାଇଛି । ଆଉ ସେ ବାଟରେ ଆମକୁ ନେଇପାରିବେ କେବଳ ସଦ୍‌ଗୁରୁ—ଅନ୍ୟ କେହି ନୁହନ୍ତି । କାରଣ ସେ ହେଉଛନ୍ତି— "ଯଦ୍ ଯଦାଚରତି ଶ୍ରେଷ୍ଠଃ"—କେବଳ ଶ୍ରେଷ୍ଠ ପୁରୁଷ । ଯେଉଁ ରାସ୍ତାରେ ସେ ଚାଲିବେ, ସେଇ ରାସ୍ତାରେ ସଂସାର ଚାଲିବ । ଆମେ ସମସ୍ତେ ଚାଲିବା । ଆପଣମାନଙ୍କର ପରମ ସୌଭାଗ୍ୟ ଆଜି ସେହିପରି ଜଣେ ମନୁଷ୍ୟ ଦେହଧାରୀ ପରମ ପୁରୁଷ ଆମ ମଧ୍ୟରେ ଅଛନ୍ତି । ସ୍ୱାଧୀନତା ସଂଗ୍ରାମରେ ସେ ସଂଗ୍ରାମୀ । ସଙ୍ଗୀତ ଗାନ କରି ଭକ୍ତି ଉପରେ ଭଗବାନଙ୍କୁ ପାଇବା ପାଇଁ ସେ ଆପଣମାନଙ୍କୁ ପ୍ରେରଣା ଦାନ କରୁଛନ୍ତି । ତାଙ୍କର ରଚନାବଳୀ ଯଦି ଆପଣମାନେ ପଢ଼ିବେ, ତେବେ ଅନୁଭବ କରିବେ ଯେ ଆମର ପୂର୍ବକାଳର ଭକ୍ତମାନେ ଯେଉଁଭଳି ଭାବରେ ସଙ୍ଗୀତ ଗାନ କରିଛନ୍ତି, ଠିକ୍ ସେହିପରି ଭାବରେ ସେ ମଧ୍ୟ ସଙ୍ଗୀତଗୁଡ଼ିକ ଗାନ କରିଛନ୍ତି । ଠିକ୍ ସେହିପରି ଭାବରେ ସେ ମଧ୍ୟ ସଙ୍ଗୀତଗୁଡ଼ିକ ରଚନା କରିଛନ୍ତି, ଗାନ କରିଛନ୍ତି, ରାଧାକୃଷ୍ଣଙ୍କ ପ୍ରେମର କଥା ସେ ବର୍ଣ୍ଣନା କରିଛନ୍ତି ଏବଂ କୃଷ୍ଣଙ୍କ ପାଖରେ, ଭଗବାନଙ୍କ ପାଖରେ ଆମେ ନିଜକୁ କିଭଳି ଅର୍ପଣ କରିପାରିବା ସେ ବାଟ ସେ ଆମକୁ ଦେଖାଇଛନ୍ତି ।

ଆଜି ତାଙ୍କ ପାଖରେ ବସି କୌଣସି ପ୍ରବଚନ ଦେବାର ଆବଶ୍ୟକ ମୋର ନାହିଁ । ପ୍ରବଚନ ଦେବାକୁ ମୁଁ ଚାହେଁ ନାହିଁ । ମୁଁ ଆପଣ ସମସ୍ତଙ୍କ ସହିତ ତାଙ୍କୁ ମୋର ଭକ୍ତି ନିବେଦନ କରିବା ପାଇଁ ଚାହେଁ । ସେ ବହୁଦିନ ଧରି ଆମମାନଙ୍କୁ ଠିକ୍ ବାଟରେ ଚଳାନ୍ତୁ ଏବଂ ଆମେମାନେ ତାଙ୍କ ମାର୍ଗରେ ବ୍ରତୀ ହୋଇ ଚାଲିବା ପାଇଁ ଆମକୁ ସେ ଶକ୍ତି ଦିଅନ୍ତୁ ଏତିକି ପ୍ରାର୍ଥନା ।

**କେବଳ ବିଶ୍ୱାସରେ ସନ୍ତୁଷ୍ଟ ହୁଅନାହିଁ, ବରଂ କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅ ।**

**—ସ୍ୱାମୀ ବିବେକାନନ୍ଦ**

# ଜାତୀୟ ଶିକ୍ଷାନୀତି

ଶ୍ରୀ ଯଦୁନାଥ ଦାସ ମହାପାତ୍ର

"ଆମ ଦେଶ ଭାରତର ଭାଗ୍ୟ ବର୍ତ୍ତମାନ ଶ୍ରେଣୀ ଗୃହ ଉପରେ ନିର୍ଭର କରେ ବୋଲି" କୋଠାରୀ କମିଶନ୍ ତାଙ୍କ ରିପୋର୍ଟର ପ୍ରଥମ ଧାଡ଼ିରେ ବର୍ଣ୍ଣନା କରିଅଛନ୍ତି । ଅନ୍ୟ ଭାଷାରେ କହିବାକୁ ଗଲେ, କୌଣସି ଦେଶର ଶିକ୍ଷାଧାରା ଓ ଶିକ୍ଷାୟତନ ହେଉଛି ସେ ଦେଶ ପାଇଁ ଅକ୍ଷୁକୋଷ (ବ୍ୟାଙ୍କ) ସଦୃଶ ଯେଉଁଥିରୁ କି ଦେଶ ତାହାର ଅର୍ଥନୈତିକ ଓ ବୈଷୟିକ କ୍ଷେତ୍ରରେ ଉନ୍ନତି ଓ ସଫଳତା ପାଇଁ ଦରକାର ହେଉଥିବା କୁଶଳୀ, ବଳିଷ୍ଠ, ଶକ୍ତିଶାଳୀ, ବିଶ୍ୱସ୍ତ ଓ ନିର୍ଭରଯୋଗ୍ୟ ମାନବ ସମ୍ବଳ ବା ଜନଶକ୍ତି ଆହରଣ କରିଥାଏ । ତେଣୁ ଶିକ୍ଷାୟତନଗୁଡ଼ିକର ମାନରେ ଅବନତି ଘଟିଲେ ଦେଶରେ ବିପତ୍ତି ଦେଖାଦେବା ସ୍ୱାଭାବିକ । ଜନସମ୍ବଳ ଓ ଜନଶକ୍ତିର ବିକାଶ ନିମନ୍ତେ ଏହି ଶିକ୍ଷାୟତନଗୁଡ଼ିକର ଧାରାବାହିକ ଭାବେ ପରୀକ୍ଷା ନିରୀକ୍ଷା କରିବା ସଙ୍ଗେସଙ୍ଗେ ଯତ୍ନ ନେବା ମଧ୍ୟ ଆବଶ୍ୟକ । ଏହାଦ୍ୱାରା ଭବିଷ୍ୟତ ବଂଶଧରମାନେ ସୁଯୋଗ୍ୟ ନାଗରିକ ହୋଇପାରିବେ ଏବଂ ଦେଶ କନିଷ୍ଠ ନେତୃତ୍ୱ ଲାଗି ଜନସମ୍ବଳ ପାଇପାରିବ ।

ଦେଶର ପ୍ରଗତି ଲାଗି ଶିକ୍ଷାର ବିବର୍ତ୍ତନ ଆବଶ୍ୟକ । ଯେଉଁ ଦେଶ ନିଜ ଶିକ୍ଷା ବ୍ୟବସ୍ଥାକୁ ଯେତିକି ସୁସଂଗଠିତ, ଶୃଙ୍ଖଳିତ ତଥା ଉନ୍ନତ କରିପାରିଛି ସେ ଦେଶ ପ୍ରଗତି ପଥରେ ସେତିକି ଅଗ୍ରସର ହୋଇଅଛି । ଏଥିଲାଗି ବିକାଶଶୀଳ ଦେଶରେ ଏକ ଜାତୀୟ ଶିକ୍ଷା ନୀତିର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଜାତୀୟ ପ୍ରଗତି, ସାଂସ୍କୃତିକ ଐକ୍ୟ, ଜାତୀୟ ସଂହତି ତଥା ସାଧାରଣ ନାଗରିକ ବୋଧର ବିକାଶ ଲାଗି ସ୍ୱାଧୀନତା ପରେ ଆମ ଦେଶରେ ୧୯୬୮ ମସିହାରେ ପ୍ରଥମେ ଏକ ଜାତୀୟ ଶିକ୍ଷା ନୀତି ପ୍ରଣୟନ କରାଯାଇଥିଲା । ଏହା ଫଳରେ ଦେଶରେ ଶିକ୍ଷାର ବ୍ୟାପକ ସମ୍ପ୍ରସାରଣ ହୋଇଥିଲା । ଗ୍ରାମାଞ୍ଚଳରେ ୯୦ ଭାଗରୁ ଅଧିକ କ୍ଷେତ୍ରରେ ପିଲାମାନେ ପ୍ରାଥମିକ ଶିକ୍ଷାର ସୁଯୋଗ ପାଇଥିଲେ । ସମଗ୍ର ଦେଶରେ ଏକ ପ୍ରକାର ଶିକ୍ଷା ଧାରା (୧୦+୨+୩) ପ୍ରଚଳନ ସକାଶେ ସୁପାରିଶ ହୋଇଥିଲା । ବିଦ୍ୟାଳୟ ପାଠ୍ୟକ୍ରମ ପ୍ରଭୃତି କ୍ଷେତ୍ରରେ ବାଳକ ଓ ବାଳିକାଙ୍କ ପାଇଁ ଏକ ସାଧାରଣ ପାଠ୍ୟକ୍ରମ ପ୍ରଚଳନ କରାଯିବା ସଙ୍ଗେସଙ୍ଗେ କର୍ମାଭିମୁଖୀ ଶିକ୍ଷାକୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଥିଲା– ଶିକ୍ଷିତ ତଥା ଅଭିଜ୍ଞ ଜନଶକ୍ତିର ସୁବିଧା ପୂରଣ ପାଇଁ ଉପାଧି ଶିକ୍ଷାର ପୁନର୍ଗଠନ ସକାଶେ ପଦକ୍ଷେପ ନିଆଯାଇଥିଲା । ସ୍ନାତକୋତ୍ତର ଶିକ୍ଷା ଓ ଗବେଷଣା ପାଇଁ ଉଚ୍ଚସ୍ତରୀୟ ଅଧ୍ୟୟନ କେନ୍ଦ୍ରମାନ ପ୍ରତିଷ୍ଠା କରାଯାଇଥିଲା । ପାଠ୍ୟକ୍ରମ ପ୍ରଣୟନ, ପ୍ରଶାସନ ଓ ଅର୍ଥଯୋଗାଣ କ୍ଷେତ୍ରରେ ରାଜ୍ୟ ଓ କେନ୍ଦ୍ର ଶାସନ ମଧ୍ୟରେ ସହଯୋଗ ପ୍ରତିଷ୍ଠା ପାଇଁ ଏବଂ ଶିକ୍ଷା ପ୍ରସାରରେ ରାଜ୍ୟ ତଥା କେନ୍ଦ୍ର ସରକାରଙ୍କର ମିଳିତ ଦାୟିତ୍ୱ ଓ ଗୁରୁତ୍ୱକୁ ଉପଲବ୍ଧି କରାଯାଇ ୧୯୭୬ ମସିହାରେ ଏକ ସମ୍ବିଧାନ ସଂଶୋଧନ ଦ୍ୱାରା ଶିକ୍ଷାକୁ ଉଭୟ କେନ୍ଦ୍ର ଓ ରାଜ୍ୟ ନିୟନ୍ତ୍ରଣାଧୀନ କରାଯାଇଥିଲା ।

କିନ୍ତୁ ଜନସଂଖ୍ୟାର ଦ୍ରୁତ ବୃଦ୍ଧି ହେତୁ ନିରକ୍ଷରଙ୍କ ସଂଖ୍ୟା ବୃଦ୍ଧି ପାଉଥିଲା । ୧୯୬୮ ମସିହାରେ ଶିକ୍ଷାନୀତିକୁ କାର୍ଯ୍ୟକାରୀ କରିବା ପାଇଁ କୌଣସି କର୍ମସୂଚୀ ପ୍ରସ୍ତୁତ ହୋଇ ନଥିଲା । ଏଥିପାଇଁ ନିର୍ଦ୍ଦିଷ୍ଟ ଦାୟିତ୍ୱ ବଣ୍ଟନ, ସାଙ୍ଗଠନିକ ବ୍ୟବସ୍ଥା କିମ୍ବା ଆବଶ୍ୟକ ଅର୍ଥର ବରାଦ ହୋଇପାରି ନଥିଲା । ଶିକ୍ଷାୟତନର ସଂଖ୍ୟା ଦ୍ରୁତ ଗତିରେ ବଢ଼ିଚାଲିବା ସତ୍ତ୍ୱେ ବିଂଶ ଶତାବ୍ଦୀର ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ନୂତନ ଉଦ୍ଭାବନ ଓ ସମାଜର ସାମୂହିକ ବିକାଶ ତଥା ପାରିପାର୍ଶ୍ୱିକ ଅବସ୍ଥାକୁ ତାଳଦେଇ ଚାଲିବା ପାଇଁ ଓ ଜନସାଧାରଣଙ୍କ ସୁବିଧା ମେଣ୍ଟାଇବା ପାଇଁ ୧୯୬୮ ଶିକ୍ଷାନୀତିର ପରିବର୍ତ୍ତନ ଆବଶ୍ୟକ ପଡ଼ିଥିଲା । ଦେଶ ବା ଜାତିର ଉନ୍ନତିରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିବା ସଙ୍ଗେସଙ୍ଗେ, ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ଦୋଷତ୍ରୁଟି ନିର୍ଦ୍ଧାରଣ କରି ସେଗୁଡ଼ିକର ଦୂରୀକରଣ ନିମନ୍ତେ ଏକ ନୂତନ ଶିକ୍ଷାନୀତିର ପ୍ରଣୟନ ବିଶେଷ ଭାବେ ଅପରିହାର୍ଯ୍ୟ ବୋଲି ସମସ୍ତେ ଉପଲବ୍ଧି କଲେ ।

ଏହି ପରିପ୍ରେକ୍ଷୀରେ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ୧୯୮୫ ମସିହା ଜାନୁଆରୀ ୫ ତାରିଖ ଦିନ ଦେଶର ପ୍ରଗତି ପାଇଁ ଏକ ନୂତନ ଶିକ୍ଷାନୀତି ଆବଶ୍ୟକ ବୋଲି ଘୋଷଣା କରିଥିଲେ । ସେ କହିଥିଲେ–"No system could remain the same for ever. It requires modification with the passage of time." ଅର୍ଥାତ୍ "କୌଣସି ପଦ୍ଧତି, ବ୍ୟବସ୍ଥା ବା ରୀତି ଅପରିବର୍ତ୍ତନୀୟ ନୁହେଁ । ସମୟର ଗତି ଅନୁସାରେ ଏହାର ପରିବର୍ତ୍ତନ ଆବଶ୍ୟକ ।" ତେଣୁ ଅଉଷ, ୧୯୮୫ ମସିହାରେ ଚତୁର୍ଥ ସର୍ବଭାରତୀୟ ଶିକ୍ଷା ସର୍ବେକ୍ଷଣର ତଥ୍ୟକୁ ଭିତ୍ତିକରି କେନ୍ଦ୍ର ଶିକ୍ଷା ମନ୍ତ୍ରଣାଳୟ ୧୧୯ ପୃଷ୍ଠାର

ଶିକ୍ଷା ତଥ୍ୟ ସମ୍ବଳିତ "ଶିକ୍ଷାର ଆହ୍ୱାନ" (The challenge of Education) ନାମରେ ଏକ ପୁସ୍ତିକା ପ୍ରକାଶ କରିଥିଲେ । ଏଥିରେ ପ୍ରକାଶିତ ତଥ୍ୟରୁ ପ୍ରତୀୟମାନ ହେଲା ଯେ ଯଦିଓ ସ୍ୱାଧୀନତା ପ୍ରାପ୍ତିଠାରୁ ପ୍ରାଥମିକ (୧୪୦ ହଜାରରୁ ୫୨୦ ହଜାର), ଉଚ୍ଚ ପ୍ରାଥମିକ (୯ ହଜାରରୁ ୧୩୦ ହଜାର), ମାଧ୍ୟମିକ (୪ ହଜାରରୁ ୫୯ ହଜାର), ଉଚ୍ଚ ଶିକ୍ଷା ସ୍ତରରେ ବିଦ୍ୟାଳୟ ଓ କଲେଜ (୨୭୩ରୁ ୫,୦୨୦) ଶିକ୍ଷକ ଓ ଛାତ୍ର ସଂଖ୍ୟା ଓ ଖର୍ଚ୍ଚାଯଜ କ୍ଷେତ୍ରରେ ବୃଦ୍ଧି ପାଇଥିଲେ ମଧ୍ୟ ବ୍ୟବହାରିକ ତଥା ଆଧୁନିକ ଜ୍ଞାନ କ୍ଷେତ୍ରରେ ଅନ୍ୟ ଉନ୍ନତଶୀଳ ଦେଶ ତୁଳନାରେ ସେହି ଅନୁପାତରେ ବୃଦ୍ଧି ଦେଖାଯାଇ ନଥିଲା । ପୁନଶ୍ଚ ଦେଶବ୍ୟାପୀ ଏହାର ବ୍ୟାପକ ସମୀକ୍ଷା ଓ ଆଲୋଚନା କରାଯାଇଥିଲା । ଏହି ପ୍ରକ୍ରିୟାରେ ମିଳିଥିବା ମତାମତ ଓ ପରାମର୍ଶଗୁଡ଼ିକୁ ଉତ୍ତମ ରୂପେ ଅନୁଧ୍ୟାନ କରାଯାଇ ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଥିଲା ଯେ ଶିକ୍ଷାନୀତିର ଆଂଶିକ ପରିବର୍ତ୍ତନରେ ସୁଫଳ ମିଳିବ ନାହିଁ । ଦେଶକୁ ପ୍ରଗତି ପଥରେ ଆଗେଇବାକୁ ହେଲେ ଶିକ୍ଷାନୀତିର ପରିବର୍ତ୍ତନ ଦରକାର । ବର୍ତ୍ତମାନ ଆମମାନଙ୍କ ମୁଣ୍ଡ ଉପରେ ଆଣବିକ ଯୁଦ୍ଧର ବାସ୍ତବ ଭୀତି ଥରଗର ଝୁଲି ରହିଛି । ମାନବ ଜାତି ଓ ତାର ସଂସ୍କୃତିକୁ ଧ୍ୱଂସ ମୁଖରୁ ରକ୍ଷା କରିବାକୁ ହେଲେ, ସମଗ୍ର ବିଶ୍ୱକୁ ଏକ ପରିବାର ରୂପେ ବିଶ୍ୱାସ କରିବା ସଙ୍ଗେସଙ୍ଗେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦିଗରେ ସମସ୍ତଙ୍କୁ ଅନୁପ୍ରାଣିତ କରିବାକୁ ହେବ । ଶିକ୍ଷାର ଏ ଦିଗରେ କୌଣସି ପ୍ରକାର ଅବହେଳା ଗ୍ରହଣୀୟ ନୁହେଁ ।

ଏଥିଲାଗି ୧୯୮୬ ମସିହା ମେ ମାସ ୮ ତାରିଖରେ ଲୋକସଭାରେ ଏବଂ ୧୩ ତାରିଖ ଦିନ ରାଜ୍ୟସଭାରେ ଏକ ଜାତୀୟ ଶିକ୍ଷାନୀତି ଗୃହୀତ ହୋଇଥିଲା ।

## ପୃଷ୍ଠଭୂମି :

ସ୍ୱାଧୀନତା ପ୍ରାପ୍ତିଠାରୁ ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ଯେତେଗୁଡ଼ିଏ କମିଟି ବା କମିଶନ୍ ହୋଇଛି ତନ୍ମଧ୍ୟରୁ ରାଧାକୃଷ୍ଣନ କମିଶନ୍ (୧୯୪୮–୪୯), ମୁଦାଲିୟର କମିଶନ୍ (୧୯୫୨–୫୩), କୋଠାରୀ କମିଶନ୍ (୧୯୬୪–୬୬), ଈଶ୍ୱରଭାଇ ପଟେଲ୍ କମିଟି (୧୯୭୭), ମାଲ୍‌କମ୍ ଆଦିଶେଷୟା କମିଟି (୧୯୭୮), ଚଟୋପାଧ୍ୟାୟ କମିଶନ୍ (୧୯୮୫) ଉଲ୍ଲେଖନୀୟ । ଆମ ରାଜ୍ୟରେ ଶିକ୍ଷାର ଉନ୍ନତି ପାଇଁ ବି: ସି: ଦାସ କମିଟି (୧୯୭୯), ସଦାଶିବ ମିଶ୍ର କମିଟି (୧୯୮୧) ଏବଂ ସୀତାକାନ୍ତ ମହାପାତ୍ର କମିଟି (୧୯୮୧) ମଧ୍ୟ ପ୍ରଣିଧାନଯୋଗ୍ୟ । ସେହିପରି ଶିକ୍ଷା କ୍ଷେତ୍ରରେ ଆବଶ୍ୟକ ସଂସ୍କାର ଆଣିବା ଲାଗି ସନନ୍ଦ ଆଇନ୍ (୧୮୧୩), ଭାରତ ସରକାରଙ୍କ ଶିକ୍ଷାନୀତି (୧୯୧୩), ଭାରତୀୟ ଶିକ୍ଷା ଆଇନ୍ (୧୯୩୪) ଏବଂ ଜାତୀୟ ଶିକ୍ଷାନୀତି (୧୯୬୮) ପ୍ରଣୟନ କରାଯାଇଥିଲା । କିନ୍ତୁ ସମ୍ବିଧାନର ନୀତିକୁ ଭିତ୍ତିକରି ଏବଂ ବିଭିନ୍ନ କମିଟି ଓ କମିଶନର ସୁପାରିଶକୁ ଦୃଷ୍ଟିରଖି ୧୯୮୬ରେ ପ୍ରଣୟନ କରାଯାଇଥିବା ଜାତୀୟ ଶିକ୍ଷାନୀତି ଯାହାକି ନୂତନ ଶିକ୍ଷାନୀତି ନାମରେ ପରିଚିତ, ଏହାକୁ ଶିକ୍ଷା କ୍ଷେତ୍ରରେ ଏକ ଐତିହାସିକ ମାଗନା କାର୍ଟା (Magna carta) କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦଲିଲଟିରେ ୨୯ ପୃଷ୍ଠାରେ ପ୍ରାୟ ଦଶ ହଜାର ଶବ୍ଦ ରହିଛି । ଏହାକୁ ୧୨ଟି ବିଭାଗରେ ବିଭକ୍ତ କରାଯାଇଛି ଏବଂ ଏଥିରେ ୧୫୭ଟି ଧାରା (Article) ରହିଅଛି । ପ୍ରତ୍ୟେକ ଧାରାରେ ଏକବିଂଶ ଶତାବ୍ଦୀର ଆହ୍ୱାନକୁ ସମ୍ମୁଖରେ ରଖି ଉନ୍ନତ ମାନବ ସମ୍ବଳ ପ୍ରସ୍ତୁତ କରିବା ଦିଗରେ କଳ୍ପନା କରାଯାଇଛି ।

ଏହି ଜାତୀୟ ଶିକ୍ଷାନୀତି ପାର୍ଲାମେଣ୍ଟରେ ଅନୁମୋଦନ ଲାଭ କରିବା ପୂର୍ବରୁ ଜାତୀୟ ତଥା ରାଜ୍ୟସ୍ତରରେ ଏହା ଉପରେ ବହୁ ତର୍କ ବିତର୍କ ହୋଇଥିଲା । ଏଥିରେ ହଜାର ହଜାର ସଂଖ୍ୟାରେ ଛାତ୍ର, ଶିକ୍ଷକ, ନାଗରିକ, ଶିକ୍ଷକ ସଂଗଠନ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିଶ୍ୱବିଦ୍ୟାଳୟ, କେନ୍ଦ୍ର ସରକାର ତଥା ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗୀୟ କର୍ମକର୍ତ୍ତା, ଜିଲ୍ଲା ପରିଷଦ ଓ ପଞ୍ଚାୟତ ସମିତିର କର୍ମକର୍ତ୍ତାମାନେ ଅଂଶ ଗ୍ରହଣ କରିଥିଲେ । ସେମାନେ ଦେଇଥିବା ସୁପାରିଶ ଓ ପ୍ରସ୍ତାବମାନ ବିଚାରକୁ ନିଆଯାଇଥିଲା । ଏହି ଶିକ୍ଷାନୀତିର ଚିଠାଟି ଦେଶର ଶିକ୍ଷା ପାଇଁ ଦୁଇ ସର୍ବୋଚ୍ଚ ଶୀର୍ଷ ସଂସ୍ଥା କେନ୍ଦ୍ରୀୟ ଶିକ୍ଷା ପରାମର୍ଶ ବୋର୍ଡ଼ (CABE) ଏବଂ ଜାତୀୟ ଉନ୍ନୟନ ପରିଷଦ (National Development Council) ଦ୍ୱାରା ଅନୁମୋଦିତ ହୋଇଥିଲା । ପୃଥିବୀର ଇତିହାସରେ ଗୋଟିଏ ଶିକ୍ଷାନୀତିକୁ ପ୍ରଣୟନ କରିବା ପାଇଁ ଏପରି ଭାବରେ ବହୁ ଶିକ୍ଷାବିତ୍ ଏବଂ ନାଗରିକମାନଙ୍କ ଦ୍ୱାରା ଚର୍ଚ୍ଚା ତଥା ତର୍କ ବିତର୍କ ଓ ଆଲୋଚନା ପରେ ପୂର୍ଣ୍ଣରୂପ ନେଇଥିବା ବିରଳ । ଏହି ପରିପ୍ରେକ୍ଷୀରେ ଶିକ୍ଷାନୀତି ୧୯୮୬ ହେଉଛି ସମସ୍ତ ଭାରତୀୟଙ୍କ ଦ୍ୱାରା ପ୍ରଣୀତ ଶିକ୍ଷାନୀତି । ଅନ୍ୟ ଭାଷାରେ ଏହା ହେଉଛି ଭାରତୀୟ ଜନସାଧାରଣଙ୍କର ଶିକ୍ଷାନୀତି ।

## ବୈଶିଷ୍ଟ୍ୟ :

ଦେଶର ବର୍ତ୍ତମାନ ଓ ଭବିଷ୍ୟତକୁ ଗଠନ କରିବାରେ ଶିକ୍ଷା ସମସ୍ତଙ୍କ ପାଇଁ ସର୍ବାଦୌ ପ୍ରୟୋଜନ । ଆମ ସମ୍ବିଧାନରେ ବର୍ଣ୍ଣିତ ସାମ୍ୟବାଦ, ଧର୍ମନିରପେକ୍ଷତା, ଗଣତାନ୍ତ୍ରିକ ମୂଲ୍ୟବୋଧ ଆଦି ଲକ୍ଷ୍ୟ ହାସଲ କରିବା ସଙ୍ଗେସଙ୍ଗେ ଜାତୀୟ ସଂହତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦିଗରେ ଶିକ୍ଷା ହିଁ ସର୍ବୋତ୍କୃଷ୍ଟ ପାଥେୟ ହୋଇପାରିବ ଏବଂ ଶିକ୍ଷା ମଧ୍ୟ ସମାଜର ବିଭିନ୍ନ ସ୍ତରରେ ଅର୍ଥନୈତିକ ଉନ୍ନତି ପାଇଁ ମାନବ ସମ୍ବଳର ବିକାଶ କରିପାରିବ ।

## ଜାତୀୟ ପରିପ୍ରେକ୍ଷୀରେ ଶିକ୍ଷା :

ଜାତୀୟ ଶିକ୍ଷାନୀତିରେ ଶିକ୍ଷାକୁ ଜାତି ଉଦ୍ଦେଶ୍ୟରେ ହିଁ ପ୍ରଣୋଦିତ କରାଯାଇଛି । ଜାତୀୟ ଶିକ୍ଷା ପଦ୍ଧତିର ପ୍ରଧାନ ଅଙ୍ଗଗୁଡ଼ିକ ହେଲା–ସମସ୍ତଙ୍କ ପାଇଁ ଶିକ୍ଷାର ସମାନ ସୁଯୋଗ, ସମଗ୍ର ଦେଶରେ ଏକ ସାଧାରଣ ଶିକ୍ଷା ବ୍ୟବସ୍ଥା, ଜାତୀୟ ପାଠ୍ୟକ୍ରମ ଓ ଆଧାର, ସମସ୍ତ ଶିକ୍ଷା ପର୍ଯ୍ୟାୟରେ ସର୍ବନିମ୍ନ ଶିକ୍ଷଣସ୍ତର, ଶିକ୍ଷକମାନଙ୍କର ଓ ଶିକ୍ଷାୟତନଗୁଡ଼ିକର ମାନ ବୃଦ୍ଧି ।

## ସମତା ପାଇଁ ଶିକ୍ଷା :

ବିଭିନ୍ନ ଗୋଷ୍ଠୀର ଶିକ୍ଷାର୍ଥୀଙ୍କ ମଧ୍ୟରେ ନିହିତ ବିଭେଦକୁ ଦୂର କରି ସମସ୍ତଙ୍କ ପାଇଁ ସମାନ ସୁଯୋଗ ଓ ସମାନ ଶିକ୍ଷା ପ୍ରବର୍ତ୍ତନ ଶିକ୍ଷା ପ୍ରଚଳନ ସକାଶେ ଜାତୀୟ ଶିକ୍ଷା ପଦ୍ଧତିରେ ବିଶେଷ ପ୍ରାଧାନ୍ୟ ଦିଆଯାଇଛି । ନାରୀମାନଙ୍କୁ ପୁରୁଷମାନଙ୍କ ସହିତ ସମକକ୍ଷ କରିବାରେ ଏବଂ ସେମାନଙ୍କର ସମ୍ମାନ, ମର୍ଯ୍ୟାଦା ଓ ସାମାଜିକ ପ୍ରତିଷ୍ଠାରେ ଉନ୍ନତି ଘଟାଇବାରେ ଶିକ୍ଷାକୁ ଏକ ଆୟୁଧ ରୂପେ ଗ୍ରହଣ କରାଯିବ । ନାରୀ ନିରକ୍ଷରତା ଦୂରୀକରଣ, ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଅଧିକ ସଂଖ୍ୟାରେ ବାଳିକାମାନଙ୍କର ପ୍ରବେଶ, ଶିକ୍ଷା ଶେଷ ପର୍ଯ୍ୟନ୍ତ ବିଦ୍ୟାଳୟରେ ନିରବଚ୍ଛିନ୍ନ ଉପସ୍ଥିତିକୁ ଅଗ୍ରାଧିକାର ଭିତ୍ତିରେ ଗୁରୁତ୍ୱ ପ୍ରଦାନ କରାଯିବ ।

ଅନୁସୂଚିତ ଏବଂ ତଫସିଲଭୁକ୍ତ ଜାତି ଓ ଉପଜାତିର ଛାତ୍ର ଛାତ୍ରୀଙ୍କ ସୁବିଧା ଦୃଷ୍ଟିରୁ ବାଲୱାଡ଼ି, ବିଦ୍ୟାଳୟ ଓ ପ୍ରୌଢ଼ଶିକ୍ଷା କେନ୍ଦ୍ରମାନ ଖୋଲାଯିବ । ଆଦିବାସୀ ଅଞ୍ଚଳରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ ପାଇଁ ଅଗ୍ରାଧିକାର ଦିଆଯିବ । ବିଭିନ୍ନ ପ୍ରକାର ପ୍ରୋତ୍ସାହନ ଦେଇ ଚଉଦ ବର୍ଷ ହେବାଯାଏ ସମସ୍ତ ପୁଅ ଓ ଝିଅମାନଙ୍କୁ ଶିକ୍ଷାଲାଭ ସକାଶେ ବ୍ୟବସ୍ଥା କରାଯିବ ।

ସଂଖ୍ୟାଲଘୁ ସମ୍ପ୍ରଦାୟ ତଥା ବିକଳାଙ୍ଗମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା କରାଯିବ । ବିକଳାଙ୍ଗ ଶିଶୁମାନଙ୍କର ଅସୁବିଧାଗୁଡ଼ିକ ଦୂର କରିବା ପାଇଁ ପ୍ରାଥମିକ ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ତାଲିମର ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ କରାଯିବ । ଅକ୍ଷମ ଶିଶୁମାନଙ୍କର ଶିକ୍ଷା ପାଇଁ ସମସ୍ତ ପ୍ରକାର ବେସରକାରୀ ଉଦ୍ୟମକୁ ପ୍ରୋତ୍ସାହନ ଦିଆଯିବ ।

ପନ୍ଦରରୁ ପଞ୍ଚତିରିଶ ବର୍ଷ ବୟସ ମଧ୍ୟରେ ଥିବା ଲୋକମାନଙ୍କ ମଧ୍ୟରୁ ନିରକ୍ଷରତା ଦୂରୀକରଣ ଆମର ସଂକଳ୍ପ । ବିଭିନ୍ନ ପ୍ରକାର ଗଣ ଶିକ୍ଷଣ ଯୋଜନାରେ କେନ୍ଦ୍ର ସରକାର, ରାଜ୍ୟ ସରକାର, ରାଜନୈତିକ ଦଳ ଓ ସେମାନଙ୍କର ଗଣ ସଙ୍ଗଠନ ଏହି ଲକ୍ଷ୍ୟ ପରିପୂରଣ କରିବା ଓ ଏଥିପାଇଁ ପ୍ରତିଶ୍ରୁତି ଦେବା ବିଧେୟ । ଏହି କାର୍ଯ୍ୟକ୍ରମରେ ବହୁ ସଂଖ୍ୟାରେ ଶିକ୍ଷକ, ଛାତ୍ର, ଯୁବ ସମାଜ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ନିଯୁକ୍ତିଦାତାମାନେ ଅଂଶ ଗ୍ରହଣ କରିବା ଆବଶ୍ୟକ । ଏତଦ୍ବ୍ୟତୀତ ପ୍ରୌଢ଼ଶିକ୍ଷାର ପଦ୍ଧତିକୁ ଉନ୍ନତ କରିବା ପାଇଁ ବିଭିନ୍ନ ଗବେଷଣାକାରୀ ସଂସ୍ଥାଗୁଡ଼ିକର ସହାୟତା ନେବା ପାଇଁମିଳିତ ଉଦ୍ୟମ କରାଯିବ ।

## ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ :

ଶିକ୍ଷାନୀତିରେ ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଅଛି । ଚଉଦବର୍ଷ ବୟସ ମଧ୍ୟରେ ଥିବା ଦେଶର ସମସ୍ତ ବାଳକ ଓ ବାଳିକାମାନଙ୍କୁ ଆନୁଷ୍ଠାନିକ ଶିକ୍ଷା ପ୍ରତିଷ୍ଠାନ ମାଧ୍ୟମରେ ଅବୈତନିକ ପ୍ରାଥମିକ ଶିକ୍ଷା ପ୍ରଦାନ କରାଯିବ । ଯେପରି ପ୍ରାଥମିକ ଶିକ୍ଷା ସମାପ୍ତି ପର୍ଯ୍ୟନ୍ତ ନାମ ଲେଖାଇଥିବା ସମସ୍ତ ଶିକ୍ଷାର୍ଥୀମାନେ ଅବିଚ୍ଛିନ୍ନ ଭାବରେ ଶିକ୍ଷା ଆହରଣ କରନ୍ତି ସେଥିପାଇଁ ବ୍ୟବସ୍ଥା କରାଯିବ । ଏହି ଶିକ୍ଷାରେ ଗୁଣାତ୍ମକ ବିକାଶ ନିମନ୍ତେ ବିଶେଷ ପ୍ରାଧାନ୍ୟ ଦିଆଯିବ । ପ୍ରାଥମିକ ଶିକ୍ଷାକୁ ଫଳପ୍ରଦ କରିବା ପାଇଁ ଏବଂ ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ ନିମନ୍ତେ ପ୍ରଥମଥର ପାଇଁ ପରିବାରରୁ ଶିକ୍ଷାଲାଭ କରିବା ପାଇଁ ଆସୁଥିବା ପିଲାମାନଙ୍କ ପାଇଁ ପ୍ରାକ୍ ପ୍ରାଥମିକ ଶିକ୍ଷାକୁ ତ୍ୱରାନ୍ୱିତ କରାଯିବ । ତତ୍ସଙ୍ଗେସଙ୍ଗେ ପରିବାରରେ ଥିବା ସାନସାନ ପିଲାଙ୍କର ଯତ୍ନ ନେଉଥିବା ଝିଅମାନଙ୍କୁ ବିଦ୍ୟାଳୟ ଶିକ୍ଷାର ସୁଯୋଗ ଦେବା ଏବଂ ଶ୍ରମଜୀବୀ ମହିଳାମାନଙ୍କର ସହାୟତା ନିମନ୍ତେ ଦିବାଯତ୍ନ କେନ୍ଦ୍ର (ଅଙ୍ଗନୱାଡ଼ି, ବାଲୱାଡ଼ି) ଖୋଲାଯିବ ।

ପାଠ୍ୟକ୍ରମ ଅନୁଯାୟୀ ଅଧ୍ୟାପନା ସମୟରେ ମୁଖସ୍ଥ କରି ମନେରଖୁଥିବା ପଦ୍ଧତିକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରାଯାଇ ଶିଶୁକେନ୍ଦ୍ରିକ ତଥା କାର୍ଯ୍ୟଭିତ୍ତିକ ଶିକ୍ଷାଦାନ ପ୍ରଣାଳୀ ଉପରେ ଗୁରୁତ୍ୱ ଦିଆଯିବ ।

ପ୍ରାଥମିକ ଶିକ୍ଷାର ପରିମାଣାତ୍ମକ ଓ ଗୁଣାତ୍ମକ ମାନବୃଦ୍ଧି ନିମନ୍ତେ ବ୍ଲାକବୋର୍ଡ ଅଭିଯାନ ମାଧ୍ୟମରେ ସମସ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ସର୍ବଦା ବ୍ୟବହାର ଉପଯୋଗୀ [illegible] ପକ୍ଷେ ଦୁଇଟି ବଡ଼ କୋଠରୀ ସହିତ ଅନ୍ୟୁନଭାବେ ଦୁଇଜଣ ଶିକ୍ଷକ (ଯେଉଁମାନଙ୍କ ମଧ୍ୟରୁ ଯେତେଦୂର ସମ୍ଭବ ଜଣେ ଶିକ୍ଷୟିତ୍ରୀ ରହିବେ) [illegible] ଆବଶ୍ୟକ ଶିକ୍ଷାଦାନ ଓ ପାଠୋପକରଣ ଯୋଗାଇ ଦିଆଯିବ ।

୧୯୯୦ ମସିହା ସୁଦ୍ଧା ୧୧ ବର୍ଷ ବୟସର ସମସ୍ତ ପିଲାଙ୍କ ପାଇଁ [illegible] ଶିକ୍ଷାଦାନ ବ୍ୟବସ୍ଥା ଆନୁଷ୍ଠାନିକ କିମ୍ବା ଅଣଆନୁଷ୍ଠାନିକ ଶିକ୍ଷା ଉପରେ କରାଯିବ । ସେହିପରି ୧୯୯୫ ସୁଦ୍ଧା ୧୪ ବର୍ଷ ବୟସର ସମସ୍ତ ପିଲାଙ୍କୁ ମାଗଣା ବାଧ୍ୟତାମୂଳକ ଶିକ୍ଷା ଦିଆଯିବ । ଅଣଆନୁଷ୍ଠାନିକ ଶିକ୍ଷାର ବ୍ୟାପକ ବ୍ୟବସ୍ଥା ସରକାରୀ ସ୍ତର ବ୍ୟତୀତ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ପ୍ରୋତ୍ସାହନ ଦିଆଯିବ ।

## ସାଧାରଣ ଶିକ୍ଷା ବ୍ୟବସ୍ଥା :

ଦେଶରେ ଗ୍ରହଣ କରାଯାଇଥିବା ୧୦+୨+୩ ଶିକ୍ଷା ଧାରାରେ ଥିବା ଦଶବର୍ଷିଆ ମୂଳ ପାଠ୍ୟକ୍ରମରୁ ପ୍ରଥମ ପାଞ୍ଚବର୍ଷ ପାଇଁ ପ୍ରାଥମିକ ଶିକ୍ଷା, ପରବର୍ତ୍ତୀ ତିନିବର୍ଷ ପାଇଁ ଉଚ୍ଚ ପ୍ରାଥମିକ ଶିକ୍ଷା ଏବଂ ଶେଷ ଦୁଇ ବର୍ଷ ପାଇଁ ମାଧ୍ୟମିକ ସ୍ତର ରୂପେ ବିଭାଜନ କରାଯାଇ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଛି ।

## ଜାତୀୟ ପାଠ୍ୟକ୍ରମ ଓ ଆଧାର :

ଜାତୀୟ ଶିକ୍ଷା ବ୍ୟବସ୍ଥାର ଅନ୍ୟତମ ଆଧାର ହେଉଛି ଏକ ଜାତୀୟ ପାଠ୍ୟକ୍ରମର ପ୍ରଚଳନ । ସାରା ଦେଶରେ ଏକ ସାଧାରଣ ମୌଳିକ ବା କେନ୍ଦ୍ରୀୟ ପାଠ୍ୟକ୍ରମ (Core Curriculum)ର ପ୍ରଚଳନ କରାଯିବ । ଏଥିରେ ସାଧାରଣ ପାଠ୍ୟକ୍ରମ ସହିତ ଭାଷା, ଗଣିତ, ପରିବେଶ/ସାମାଜିକ ବିଜ୍ଞାନ, ବିଜ୍ଞାନ, ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷା, କଳା, କର୍ମାନୁଭୂତି ତଥା ନୈତିକ ଶିକ୍ଷା ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ, ସାମ୍ବିଧାନିକ କର୍ତ୍ତବ୍ୟବୋଧ, ଜାତୀୟତାବୋଧ ସୃଷ୍ଟି କରିପାରୁଥିବା ବିଷୟବସ୍ତୁ, ଭାରତର ସାଧାରଣ ସାଂସ୍କୃତିକ ପରମ୍ପରା, ଗଣତନ୍ତ୍ର ଓ ଧର୍ମନିରପେକ୍ଷତା, ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ସମତା, ସାମ୍ୟଭାବ, ପରିବେଶର ସୁରକ୍ଷା, ସାମାଜିକ କୁସଂସ୍କାର ଓ କୁପ୍ରଥା ଆଦି ସାମାଜିକ ପ୍ରତିବନ୍ଧକର ଦୂରୀକରଣ ସୀମିତ ପରିବାରର ଆବଶ୍ୟକତା, ସର୍ବୋପରି ବୈଜ୍ଞାନିକ ଚେତନା ସୃଷ୍ଟି କରିବା ନିମନ୍ତେ ଉପାଦାନଗୁଡ଼ିକ ରହିବ । ଫଳରେ ସମସ୍ତ ଶିକ୍ଷାର୍ଥୀମାନଙ୍କଠାରେ ସେମାନଙ୍କ ଶ୍ରେଣୀ/ସ୍ତର ଉପଯୋଗୀ ସର୍ବନିମ୍ନ ଶିକ୍ଷଣ ଅନୁଭୂତି ହାସଲ କରାଇବା ସକାଶେ ନିର୍ଦ୍ଧାରିତ ଜାତୀୟ ପାଠ୍ୟକ୍ରମ ବିଶେଷ ରୂପେ ସାହାଯ୍ୟ କରିବ

## ଆଦର୍ଶ ବିଦ୍ୟାଳୟ :

ଉଚ୍ଚମାନର ଶିକ୍ଷା ପାଇଁ ଆଦର୍ଶ ଆବାସିକ ବିଦ୍ୟାଳୟମାନ ଦେଶର ସବୁ ଅଞ୍ଚଳରେ ଖୋଲାଯିବ । ଏହି ଅନୁଷ୍ଠାନମାନଙ୍କରେ ଗବେଷଣା ଓ ପରୀକ୍ଷା ପାଇଁ ସୁଯୋଗ ରହିବ । ଗ୍ରାମାଞ୍ଚଳର ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ଦେଶର ବିଭିନ୍ନ ଅଞ୍ଚଳରୁ ଆଣି ଏକତ୍ରିତ କରି ସେମାନଙ୍କର ସାମର୍ଥ୍ୟର ପୂର୍ଣ୍ଣ ବିକାଶ ପାଇଁ ସୁଯୋଗ ସୃଷ୍ଟି କରିବା ଏହି ଆଦର୍ଶ ବିଦ୍ୟାଳୟଗୁଡ଼ିକର ଲକ୍ଷ୍ୟ ହେବ ।

## ଧନ୍ଦାମୂଳକ ଶିକ୍ଷା :

ପ୍ରସ୍ତାବିତ ପୁନର୍ଗଠନରେ ଆତ୍ମନିଯୁକ୍ତି ଏବଂ ବାଣିଜ୍ୟ ବ୍ୟବସାୟ ପାଇଁ ଅନୁକୂଳ ମନୋଭାବ, ଜ୍ଞାନ ଏବଂ ଦକ୍ଷତା ସୃଷ୍ଟି କରିବା ନିମନ୍ତେ ବୈଷୟିକ ଶିକ୍ଷା ପ୍ରବର୍ତ୍ତନର ଏକ ସୁଚିନ୍ତିତ ଯୋଜନା କାର୍ଯ୍ୟକାରୀ କରାଯିବାର ପରିକଳ୍ପନା କରାଯାଇଅଛି । ୧୯୯୦ ମସିହା ସୁଦ୍ଧା ଉଚ୍ଚ ମାଧ୍ୟମିକ ଶିକ୍ଷା ସ୍ତରରେ ଦଶପ୍ରତିଶତ ଶିକ୍ଷାର୍ଥୀ, ୧୯୯୫ ମସିହା ସୁଦ୍ଧା ପଚିଶପ୍ରତିଶତ ଶିକ୍ଷାର୍ଥୀ ବୈଷୟିକ ଶିକ୍ଷା ପାଠ୍ୟକ୍ରମରେ ଗ୍ରହଣ କରିବାର ପ୍ରସ୍ତାବ ରହିଅଛି ।

## ଉଚ୍ଚ ଶିକ୍ଷା :

ଦ୍ରୁତ ଜ୍ଞାନ ବିସ୍ଫୋରଣ ଦୃଷ୍ଟିରୁ ଉଚ୍ଚ ଶିକ୍ଷାକୁ ଗତିଶୀଳ କରିବାକୁ ହେବ । ଯେପରି ଏହା ନିରବଚ୍ଛିନ୍ନ ଭାବରେ ଜ୍ଞାନର ନୂତନ ଦିଗନ୍ତ ଆବିଷ୍କାର କରି ଚାଲିବ । ସୁପ୍ରତିଷ୍ଠିତ ଅନୁଷ୍ଠାନ ବହୁ ସଂଖ୍ୟାରେ ଗଢ଼ି ଉଠିବାକୁ ସୁଯୋଗ ଦିଆଯିବ । ବିଶେଷ ଜ୍ଞାନ ଅର୍ଜନ ପାଇଁ ଉଚ୍ଚ ଶିକ୍ଷା ପାଠ୍ୟକ୍ରମ ଓ କାର୍ଯ୍ୟକ୍ରମଗୁଡ଼ିକର ପୁନର୍ବିନ୍ୟାସ କରାଯିବ । ଉଚ୍ଚ ଶିକ୍ଷା ପରିଷଦ ମାଧ୍ୟମରେ ରାଜ୍ୟସ୍ତରରେ ଉଚ୍ଚ ଶିକ୍ଷାର ଯୋଜନା ପ୍ରସ୍ତୁତ କରାଯିବ ଓ ସମନ୍ୱୟ ଅଣାଯିବ । ଗବେଷଣା ଓ ଶିକ୍ଷକ ତାଲିମ ପାଇଁ ବିଶେଷ ଧ୍ୟାନ ଦିଆଯିବ । ବୃତ୍ତିର ପୂର୍ବବର୍ତ୍ତୀ ଓ ବୃତ୍ତିର କାଳ ମଧ୍ୟରେ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କୁ ଆବଶ୍ୟକୀୟ ତାଲିମ ଦିଆଯିବ । ଉଚ୍ଚ ଶିକ୍ଷାର ସମ୍ପ୍ରସାରଣ ନିମନ୍ତେ ୧୯୮୫ ମସିହାରେ ପ୍ରତିଷ୍ଠିତ ହୋଇଥିବା ଇନ୍ଦିରା ଗାନ୍ଧୀ ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟର ପରିସରକୁ ବ୍ୟାପକ କରାଯିବ । ଯୁବକ ଓ ଯୁବତୀମାନଙ୍କୁ ଜାତୀୟ ତଥା ସମାଜ ବିକାଶ କାର୍ଯ୍ୟକ୍ରମରେ ସଂପୃକ୍ତ କରିବାଲାଗି ଜାତୀୟ ସେବା ସଂସ୍ଥା ଓ ଜାତୀୟ ସମର ଶିକ୍ଷାର୍ଥୀ ବା ଅନ୍ୟ ଯୁବ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯିବ ।

## ମୂଲ୍ୟାୟନ :

ଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ମୂଲ୍ୟାୟନ ପଦ୍ଧତିର ଉପଯୁକ୍ତ ବିନିଯୋଗ କରାଯିବ । ମୂଲ୍ୟାୟନ ବ୍ୟବସ୍ଥାକୁ ଯୁକ୍ତିଯୁକ୍ତ, ଯଥାର୍ଥ ଓ ନିର୍ଭରଯୋଗ୍ୟ କରିବା ଦିଗରେ ଶିକ୍ଷାନୀତିରେ ବିଶେଷ ଗୁରୁତ୍ୱ ଦିଆଯାଇଅଛି । ବିଦ୍ୟାର୍ଥୀଙ୍କର ବିକାଶର ମାତ୍ରା ନିର୍ଭୁଲ ଭାବରେ ନିର୍ଣ୍ଣୟ କରିବା ପାଇଁ ଏବଂ ଶିକ୍ଷାଦାନ ତଥା ଶିକ୍ଷାଲାଭ ପ୍ରକ୍ରିୟାଗୁଡ଼ିକୁ ଅଧିକ ଉନ୍ନତ କରିବା ପାଇଁ ପରୀକ୍ଷା ପଦ୍ଧତିରେ ସଂସ୍କାର ଅଣାଯିବ ।

## ଶିକ୍ଷା ପରିଚାଳନା :

ଶିକ୍ଷା ପ୍ରଯୋଜନା ଓ ପରିଚାଳନା ବ୍ୟବସ୍ଥାର ବିକେନ୍ଦ୍ରୀକରଣ କରାଯିବା ସଙ୍ଗେସଙ୍ଗେ ଶିକ୍ଷାନୁଷ୍ଠାନଗୁଡ଼ିକୁ ସ୍ୱୟଂଚାଳିତ କରିବା ଲାଗି ଏକ ପରିବେଶ ସୃଷ୍ଟି କରାଯିବ। ଶିକ୍ଷା ଯୋଜନା ପ୍ରଣୟନ ଓ ପରିଚାଳନାରେ ଅଧିକରୁ ଅଧିକ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଯିବ । କେନ୍ଦ୍ର, ରାଜ୍ୟ ତଥା ଜିଲ୍ଲା ସ୍ତରରେ ଶିକ୍ଷା ଉପଦେଷ୍ଟାମଣ୍ଡଳୀମାନ ପ୍ରତିଷ୍ଠା କରାଯିବ । ଅନୁଷ୍ଠାନଗୁଡ଼ିକର ମୁଖ୍ୟ ଓ ଶିକ୍ଷା ଯୋଜନାକାରୀମାନଙ୍କୁ ତାଲିମ ଦେବା ଦିଗରେ ବିଶେଷ ଧ୍ୟାନ ଦିଆଯିବ । ବିଦ୍ୟାଳୟ ଉନ୍ନୟନ କାର୍ଯ୍ୟକ୍ରମରେ ଗୋଷ୍ଠୀକୁ ଉପଯୁକ୍ତ ପ୍ରତିନିଧିମଣ୍ଡଳୀ ବା ଅନୁରୂପ କୌଣସି ବ୍ୟବସ୍ଥା ମାଧ୍ୟମରେ ସଂଶ୍ଳିଷ୍ଟ କରାଯିବ । ଶିକ୍ଷକମାନଙ୍କର ବୃତ୍ତିଗତ ଦକ୍ଷତାର ଅଭିବୃଦ୍ଧି ଓ ପରସ୍ପର ଅଭିଜ୍ଞତା, ସୁବିଧା ଓ ସୁଯୋଗର ଆଦାନ ପ୍ରଦାନ ପାଇଁ ବିଦ୍ୟାଳୟ ସଙ୍ଗମ ଯୋଜନା (School Complex)କୁ କାର୍ଯ୍ୟକାରୀ କରିବାକୁ ହେବ । ଏହାଦ୍ୱାରା ଶିକ୍ଷାର ମାନ ଉନ୍ନତ ହେବା ସଙ୍ଗେସଙ୍ଗେ ବିଦ୍ୟାଳୟ ପରିଦର୍ଶନଗୁଡ଼ିକ ସୁଦୃଢ଼ ହୋଇପାରିବ । ସନ୍ତୋଷଜନକ ରୂପେ ପରିଚାଳନା କରିପାରୁଥିବା ବେସରକାରୀ ଓ ସ୍ୱେଚ୍ଛାସେବୀ ସଂସ୍ଥା ବା ବ୍ୟକ୍ତିବିଶେଷଙ୍କ ଉଦ୍ୟମକୁ ସ୍ୱାଗତ କରାଯିବା ସଙ୍ଗେସଙ୍ଗେ ସେମାନଙ୍କୁ ଆର୍ଥିକ ସାହାଯ୍ୟ ଦିଆଯିବାର ବ୍ୟବସ୍ଥା କରାଯିବ । କିନ୍ତୁ ବ୍ୟବସାୟିକ ଭିତ୍ତିରେ ଗଢ଼ି ଉଠିଥିବା ଶିକ୍ଷାନୁଷ୍ଠାନଗୁଡ଼ିକୁ ପ୍ରତିରୋଧ କରାଯିବ ।

## ଶିକ୍ଷକ ଓ ଶିକ୍ଷକ ପ୍ରଶିକ୍ଷଣ :

ଜାତୀୟ ଶିକ୍ଷାନୀତିରେ ଶିକ୍ଷାର ମାନ ବୃଦ୍ଧି ନିମନ୍ତେ ଶିକ୍ଷକଗୋଷ୍ଠୀ ଉପରେ ସମ୍ପୂର୍ଣ୍ଣ ଆସ୍ଥା ସ୍ଥାପନ କରାଯାଇଅଛି । ଶିକ୍ଷକମାନେ ତାଙ୍କର କାର୍ଯ୍ୟକୁ ଯଥାଯଥ ଭାବେ ସମ୍ପାଦନା କରିବା ନିମନ୍ତେ ସ୍ୱାଧୀନ ଭାବେ ଚିନ୍ତା ଓ ପରୀକ୍ଷା କରି ନୂତନ ପନ୍ଥା ଉଦ୍ଭାବନ କରିବା ଦିଗରେ ଶିକ୍ଷାନୀତିରେ ପରିକଳ୍ପନା କରାଯାଇଅଛି । ଶିକ୍ଷକର ଜ୍ଞାନ ଓ ଦକ୍ଷତାର ଅଭିବୃଦ୍ଧି ନିମନ୍ତେ ବୃତ୍ତିଗତ ପୂର୍ବବର୍ତ୍ତୀ ଓ ବୃତ୍ତିଗତକାଳୀନ ପ୍ରଶିକ୍ଷଣ ଏକାନ୍ତ ଆବଶ୍ୟକ । ଶିକ୍ଷକ ପ୍ରଶିକ୍ଷଣ ବ୍ୟବସ୍ଥାକୁ ଯୁଗୋପଯୋଗୀ କରିବା ନିମନ୍ତେ ଏହାର ବ୍ୟାପକ ପୁନର୍ବିନ୍ୟାସ କରାଯିବ ।

ଜିଲ୍ଲାସ୍ତରରେ ଜିଲ୍ଲା ଶିକ୍ଷଣ ପ୍ରଶିକ୍ଷଣ ସଂସ୍ଥାମାନ (DIET) ସ୍ଥାପନ କରାଯାଇ ପ୍ରାଥମିକ ଶିକ୍ଷକ, ଅଣଆନୁଷ୍ଠାନିକ ଓ ପ୍ରୌଢ଼ଶିକ୍ଷା ସଂସ୍ଥାରେ ସଂଶ୍ଳିଷ୍ଟ ଥିବା କର୍ମୀମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ କରାଯିବ । ଜିଲ୍ଲା ପ୍ରଶିକ୍ଷଣ ସଂସ୍ଥାମାନ ପ୍ରତିଷ୍ଠିତ ହେବା ସଙ୍ଗେସଙ୍ଗେ ନିମ୍ନମାନର ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନଗୁଡ଼ିକୁ ଅପସାରିତ କରାଯିବ । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ମହାବିଦ୍ୟାଳୟ କାର୍ଯ୍ୟରେ ସହଯୋଗ କରିବା ନିମନ୍ତେ କେତେକ ପ୍ରଶିକ୍ଷଣ ମହାବିଦ୍ୟାଳୟର ମାନ ଉନ୍ନତ କରାଯିବ । ଜାତୀୟ ଶିକ୍ଷକ ପରିଷଦ ନୂଆଦିଲ୍ଲୀ ପ୍ରଶିକ୍ଷଣ ପାଠ୍ୟକ୍ରମ ଓ ପଦ୍ଧତି ସମ୍ପର୍କରେ ଦିଗ୍‌ଦର୍ଶନ ଯୋଗାଇବ ।

ଏହି ଶିକ୍ଷାନୀତିକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ଏକ କର୍ମସୂଚୀ (Programme of Action) ପ୍ରସ୍ତୁତ କରାଯାଇଥିଲା । ଏହି କର୍ମସୂଚୀରେ ୨୩ ଗୋଟି ବିଭାଗ ରହିଛି ଏବଂ ଏହାକୁ ପ୍ରସ୍ତୁତ କରିବା ପାଇଁ ୨୩ ଗୋଟି କ୍ରିୟାନୁଷ୍ଠାନ କମିଟି ଗଠନ କରାଯାଇଥିଲା । ଏହି କର୍ମସୂଚୀ ୧୯୮୬ ମସିହା ବର୍ଷାକାଳୀନ ଅଧିବେଶନରେ ପାର୍ଲ୍ୟାମେଣ୍ଟରେ ଗୃହୀତ ହୋଇଥିଲା । ନୂତନ ଶିକ୍ଷାନୀତିର ସଫଳ ରୂପାୟନ ଦ୍ୱାରା ଭାରତବର୍ଷର ପ୍ରଗତି ଯେ ତ୍ୱରାନ୍ୱିତ ହେବ ଏଥିରେ ସନ୍ଦେହ ନାହିଁ ।

ମନ୍ତ୍ରୀ, ଶିକ୍ଷା, କ୍ରୀଡ଼ା ଓ ଯୁବ କଲ୍ୟାଣ ।



# ୧୦୭ତମ ଜୟନ୍ତୀ ଉପଲକ୍ଷେ

# ଗଣକବି ବୈଷ୍ଣବ ପାଣି

ସେକ ମତଲୁବ୍ ଅଲି

'ଯାତ୍ରା' ଆମ ସାହିତ୍ୟରେ ଏକ ସୁପ୍ରାଚୀନ କଳା । ଜାତୀୟ ନାଟକ ରମ୍ୟମ୍ ଗୁଣରେ ଉତ୍କଳୀୟ ଯାତ୍ରା ଓ ଗୀତିନାଟ୍ୟ ଉତ୍କୃଷ୍ଟ ହୋଇ ତା'ର କଳା ସଂଗୀତ, ସାହିତ୍ୟ ଓ ଅଭିନୟ କଳାର ଯାଦୁକାରୀ ସ୍ପର୍ଶରେ ଜନ ହୃଦୟକୁ ମୁଗ୍ଧ ଓ ବିମୁଗ୍ଧ କରୁଥିଲେ ମଧ୍ୟ ପକ୍ଷପାତୀ ପଣ୍ଡିତ ଓ ସାହିତ୍ୟିକବର୍ଗ ଅଶ୍ଳୀଳତା ଓ ବିଦ୍ରୂପର ଦୁହାଇ ଦେଇ ଯାତ୍ରା ଓ ଗୀତିନାଟ୍ୟକୁ ସାହିତ୍ୟ ପଦବାଚ୍ୟ ଓ ତା'ର ସ୍ରଷ୍ଟାମାନଙ୍କୁ ସାହିତ୍ୟିକ ଶ୍ରେଣୀଭୁକ୍ତ କଲେ ନାହିଁ । ଭାରତୀୟ ସାହିତ୍ୟରେ ବିଭିନ୍ନ ଆଞ୍ଚଳିକ ଭାଷାରେ ଯାତ୍ରା ସାହିତ୍ୟର ଏହାହିଁ ଥିଲା ଅବସ୍ଥା । ବଂଗୀୟ ସାହିତ୍ୟରେ ମଧ୍ୟ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯାତ୍ରା ଏବଂ ତା'ର ଲେଖକମାନେ ଏହିଭଳି ସମାଲୋଚନାରୁ ମୁକ୍ତ ହୋଇ ନଥିଲେ । ଏହିଭଳି ଏକ ବିତର୍କିତ ମୁହୂର୍ତ୍ତରେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ୧୯୦୩ ମସିହାରେ ମାତ୍ର ୨୧ ବର୍ଷର ଯୁବକ ନିଜ ଗ୍ରାମ କୋଠପଦାର (କଟକ ଜିଲ୍ଲା ମହାଙ୍ଗା ଥାନା ଅନ୍ତର୍ଗତ) ଅନତି ଦୂରରେ ମାହାଙ୍ଗାର କଣ୍ଠେଇପୁରଠାରେ ଶ୍ରୀ ଶ୍ରୀ ବିନୋଦ ବିହାରୀଙ୍କ ପାଖରେ ଅଧିଆପଡ଼ି ବର ଲାଭ କଲେ । ଝଙ୍କଡ ବାସିନୀ ଶାରଳାଙ୍କର ଆଶୀର୍ବାଦରୁ ସୁଦ୍ରମୁନୀ ସାରଳା ଦାସ ମହାଭାରତ ରଚନା କରିଥିଲେ । ରାମ ତାରକ ମନ୍ତ୍ର ସିଦ୍ଧକରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କାବ୍ୟ ଓ ମହାକାବ୍ୟ ରଚନାକରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି – ଶ୍ରୀ ଶ୍ରୀ ବିନୋଦ ବିହାରୀଙ୍କଠାରୁ ବରଲାଭ କରି କବି ବୈଷ୍ଣବ ପାଣି ଉତ୍କଳୀୟ ସାରସ୍ୱତକୁ ସମୃଦ୍ଧ କରିବା ସହିତ ଉତ୍କଳୀୟ ପ୍ରାଚୀନତମ ମୁକ୍ତ ରଂଗମଞ୍ଚକୁ ଅଧିକ ଜନପ୍ରିୟ ଓ ଯାତ୍ରା ସାହିତ୍ୟକୁ ଋଦ୍ଧିମନ୍ତ କରି ଜନ ହୃଦୟକୁ ଜୟ କରିଥିଲେ । ତାଙ୍କର ପ୍ରଥମ ରଚନା 'ମେଘନାଦବଧ' ଗୀତିନାଟ୍ୟରେ ଲେଖିଥିଲେ–

'ବିଂଶ ବାହୁ ଦେଖି ବଂଶ ନିଧନ କାରଣ
ମନ୍ଦାକୁ ସ୍ପୃହି ରାଜ୍ଞୀ କରଇ କାରୁଣ୍ୟ ।
ମନ୍ଦ ମୋର ସ୍ୱର୍ଣ୍ଣଲଙ୍କା ହେଲା ଛାରଖାର
କାହୁଁ ଆସି ରଘୁପତି ବିହିଲା ବିପରି
କିପରି ମରିବେ ବନରେ ବେନି ଯତି
ନିର ହୋଇ ନାଶିଲା ମୋ କୁମ୍ଭକର୍ଣ୍ଣ ଭାଇ'–

ଏହି ପ୍ରଥମ ସୃଷ୍ଟି 'ମେଘନାଦ ବଧ' ଗୀତିନାଟ୍ୟ ଅଭିନୀତ ହେଲାପରେ ତରୁଣ ଗୀତିନାଟ୍ୟକାରଙ୍କର ପ୍ରଶଂସା ଶତ ମୁଖରେ ପ୍ରଶଂସିତ ହେଲା । କଥାବସ୍ତୁ ଚରିତ୍ର ଚିତ୍ରଣ, ଭାବ, ଭାଷା ଓ ସଂଗୀତ ଏହି ଗୀତିନାଟ୍ୟରେ ଏକକୁ ଆରେକ ବଳି ପଡ଼ିଲା । ପୂର୍ବର ଗୀତିନାଟ୍ୟକାର ଜଗନ୍ନାଥ ପାଣି, ଗୋପାଳ ଦାସ, ସମସାମୟିକ ଗୀତିନାଟ୍ୟକାର ବାଳକୃଷ୍ଣ ମହାନ୍ତିଙ୍କର ପ୍ରତିଭାକୁ ଅତିକ୍ରମ କରିଗଲା । ପୁରପଲ୍ଲୀରେ, ସହର ନଗରୀରେ ଅଜସ୍ର ମଣିଷର ହୃଦୟକୁ ଏହା ଗଭୀର ଭାବରେ ସ୍ପର୍ଶ କଲା । ଏହି ତରୁଣ ଶିଳ୍ପୀ ଆଉ କେହି ନୁହଁନ୍ତି – ଏ ଜାତିର ପ୍ରିୟ କବି ଗୀତିନାଟ୍ୟକାର ଗଣକବି ବୈଷ୍ଣବ ପାଣି । ଶ୍ରୀ ବିନୋଦ ବିହାରୀଙ୍କଠାରୁ ବର ଲାଭକରି ଗଣକବି ବୈଷ୍ଣବ ପାଣି ଉତ୍କଳୀୟ ଗୀତିନାଟ୍ୟକୁ ସମୃଦ୍ଧ କଲେ ଏବଂ ସୁପ୍ରାଚୀନ ଓଡ଼ିଶାର ମୁକ୍ତ ରଙ୍ଗମଞ୍ଚକୁ ଅଧିକ ଜନପ୍ରିୟ କରାଇଲେ । ତାଙ୍କର ମହାନ ଲେଖନୀରୁ ସୃଷ୍ଟି ହେଲା ମେଘନାଦ ବଧ, ରଙ୍ଗସଭା, ନଳଦମୟନ୍ତୀ, ଧ୍ରୁବ ଚରିତ, ଦାନବୀର ହରିଶ୍ଚନ୍ଦ୍ର, ଦୁର୍ଯ୍ୟୋଧନ ଘୋଷଯାତ୍ରା, ଦକ୍ଷଯଜ୍ଞ, ଅଭିମନ୍ୟୁ ବଧ, କୀଚକ ବଧ, ରାବଣ ବଧ, ବ୍ରଜଲୀଳା, ସାକ୍ଷୀଗୋପାଳ, ଶୁକଦେବ ଜନ୍ମ, ଜପତପୋଣା, ଭକ୍ତ ସୁଦାମା, ବସନ୍ତ ରାସ, ପ୍ରମିଳା ଅର୍ଜୁନ ଓ କଳା ପାହାଡ ଇତ୍ୟାଦି । ଗଣକବି ବୈଷ୍ଣବ ପାଣିଙ୍କର ସାରସ୍ୱତ ସାଧନା ଓଡ଼ିଆ ସାହିତ୍ୟରେ ଯାତ୍ରା ସାହିତ୍ୟକୁ ପ୍ରତିଷ୍ଠିତ କଲା ଏବଂ ଏଥିରେ ଏକ ନୂତନ ମୂଲ୍ୟବୋଧ ସୃଷ୍ଟି ହେଲା ।

ଏହା ସତ୍ୟ ବୈଷ୍ଣବ ପାଣି ଉଚ୍ଚ ଶିକ୍ଷାରୁ ବଂଚିତ ଥିଲେ । ପରିବାରର ପ୍ରତିଷ୍ଠା ନଥିଲା କି ତାଙ୍କର ଯଥେଷ୍ଟ ଆର୍ଥିକ ସମ୍ବଳ ନଥିଲା । ବଂଚିବା ପାଇଁ ତାଙ୍କୁ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା । କୋଠପଦା ମାଇନର ସ୍କୁଲ ବୋର୍ଡ଼ିଂରେ ରୋଷେଇ କାମ, ରଘୁନାଥ ଜୀଉଙ୍କ ମଠରେ ଗୋସୁଖଣ, ପରେ ପୁଲିସ୍‌ଟୋଲା ଓ ଗୁଣ୍ଡା, ସେକ୍‌ସନ୍ ଅଫିସରେ ପେଟ୍ରୋଲ ସ୍ପିରିଟ ଟାପରେ ପାଲାଗାନ – ଯାତ୍ରା ଦଳରେ ଓସ୍ତାଦ୍ ଇତ୍ୟାଦି ସହିତ ଅମରକୋଷ ଓ ସର୍ବସାର ବ୍ୟାକରଣ ଚର୍ଚ୍ଚା ମଧ୍ୟ ଶେଷ ହୋଇଥିଲା ।

ଗଣକବି ବୈଷ୍ଣବ ପାଣି ଯାତ୍ରା ଦଳର ଓସ୍ତାଦି ସହିତ ଧାରାବାହିକ ଭାବରେ ତାଙ୍କର ଲେଖନୀ ସୃଜନା କରି ବହୁ ପରିଚିତ ପୌରାଣିକ,

ଐତିହାସିକ ଏବଂ ସମସାମୟିକ ଘଟଣାକୁ ନିଜର କଳ୍ପନା ଓ ଲେଖନୀର ନୂତନ ସ୍ପର୍ଶରେ ଅଲୌକିକତା ସୃଷ୍ଟି କରିଛନ୍ତି । ପୂର୍ବରୁ ଯାତ୍ରାରେ ଭିନ୍ନ ଭିନ୍ନ ଭୂମିକା ପାଇଁ ପାତ୍ରପାତ୍ରୀ ପୃଥକ ହୋଇ ନଥିଲେ । ସାଧାରଣତଃ ରାଜାରାଣୀ ଓ ଜଣେ ଦୂତୀ ଏହି ତିନିଜଣଙ୍କ ଦ୍ୱାରା ଆଖ୍ୟାୟିକମାନ ନାନା ଛନ୍ଦରେ ଗାନ ହେଉଥିବା, ଗଣକବି ବୈଷ୍ଣବ ପାଣି ପ୍ରଥମେ ଭିନ୍ନ ଭିନ୍ନ ଭୂମିକା ପାଇଁ ବିଭିନ୍ନ ପାତ୍ରପାତ୍ରୀ ଚରିତ୍ର ପ୍ରବର୍ତ୍ତନ କଲେ ସମସ୍ତଙ୍କ ପାଇଁ ସ୍ୱତନ୍ତ୍ର ଛନ୍ଦରେ ସଙ୍ଗୀତ ରଚନା କରିବା ସହିତ ବଚନିକା ଅର୍ଥାତ୍ ଚରିତ୍ର ମୁଖରେ କବି ସଂଳାପ ସଂଯୋଗ କଲେ । ତାଙ୍କର ସଂଗୀତ ଯେପରି ଲଳିତ ଓ ଭାବୋଦ୍ଦୀପକ ରସକୁ ମନାଇ ସ୍ୱର ଏବଂ ସଂଳାପ ଗୁଡ଼ିକ ସେହିପରି ଯୁକ୍ତିଯୁକ୍ତ ତର୍କପୂର୍ଣ୍ଣ ତଥା ଅତ୍ୟନ୍ତ ସରଳ କଥିତ ଭାଷାରେ ରଚିତ । ମୁକ୍ତ ରଙ୍ଗମଞ୍ଚରେ ସାମାନ୍ୟ ବାଦ୍ୟଯନ୍ତ୍ରକୁ କେବଳ ସମ୍ବଳ କରି ବିଶାଳ ଜନ ଅରଣ୍ୟକୁ ଆକୃଷ୍ଟ କରିବାକୁ ହେଲେ – ସେମାନଙ୍କର ରସ ପିପାସୁମାନଙ୍କୁ ବୁଝିବାକୁ ହେବ, ଦର୍ଶକ ମନର ରସ କନ୍ଦରରେ ସଙ୍ଗୀତ ଓ ସଂଳାପ ମାଧ୍ୟମରେ ସିହରଣ ସୃଷ୍ଟି କରିବାକୁ ହେବ, ସଫଳତାର ସହିତ ଗଣକବି ବୈଷ୍ଣବ ପାଣି ତାହା କରି ପାରିଥିଲେ । ବାସ୍ତବିକ ଗତାନୁଗତିକ ଓଡ଼ିଆ ଗୀତିନାଟ୍ୟ ଓ ଯାତ୍ରା ସାହିତ୍ୟର ଇତିହାସର ମୋଡ଼କୁ ସେ ବଦଳାଇ ଦେଇଥିଲେ ।

ସାମାଜିକ ନୀତି ନିୟମ ଦୃଷ୍ଟିରୁ ଗଣକବି ବୈଷ୍ଣବ ପାଣି ଏକ ବ୍ୟତିକ୍ରମ– ଏଥିରେ ସନ୍ଦେହ ନାହିଁ । ହେଲେ ଭାବ ଓ ଭକ୍ତିରେ ମହାପ୍ରଭୁ ଜଗନ୍ନାଥଙ୍କର ସେ ଥିଲେ ପରମ ଭକ୍ତ । ସନ୍ଥକବି ଭୀମଭୋଇଙ୍କର ସ୍ତୁତି ଚିନ୍ତାମଣି ବ୍ରହ୍ମଗୀତା ସଦୃଶ୍ୟ ଗଣକବି ବୈଷ୍ଣବ ପାଣି ଜଗନ୍ନାଥ ଜଣାଣ ଅବଧୂତ ଭଜନ, ସ୍ତୁତି ମାଳିକା, ଶ୍ରୀ ନୀଳାଚଳ ଭଜନ ଓ ଭାଗବତ ଭଜନମାଳା ରଚନାକରି ପ୍ରଭୁଙ୍କ ପାଦରେ ଉତ୍ସର୍ଗ କରିଛନ୍ତି । ଗଣକବି ନିଜର ଏକମାତ୍ର ପୁତ୍ରର ଆକସ୍ମିକ ବିୟୋଗରେ 'ନୀଳାଚଳ ଚଉତିଶା' ରଚନା କରି ନିଜର ମାର୍ମିକ କାରୁଣ୍ୟ ଓ ଅଶ୍ରୁ ମୋଚନ କରିଛନ୍ତି । ପୁନଶ୍ଚ ନିଜେ ରୋଗଶଯ୍ୟାରେ ଯନ୍ତ୍ରଣାରେ ଅଧିର ହୋଇ ବଡ ଠାକୁରଙ୍କୁ ଉତ୍ତର ସ୍ୱାଭିମାନର ଦୋଷାରୋପ କରିବାରେ ପଛେଇ ନାହାନ୍ତି ।

'ଛାଡ ମାଡଖିଆ ବୁଦ୍ଧି ହେ ବଡ ଦେଉଳେ ବଡ ଗୋସାଇଁ ।
ଯେ ମାଇଲା ମାଡ ସେ ହୋଇଲା ବଡ– ବଡ ହେଲୁ ତାକୁ ତୁହି ।
ମାଡ ଦେଲା ଗୋପେ ଗୌଡୁଣୀ ରାଧା ତା ଗୋଡ ଧଇଲୁ ଯାଇ
ନନ୍ଦରାଜ ଛାଟ ଆଣ୍ଟେ ପିଟିବାରୁ ନେଲୁ ବଇକୁଣ୍ଠ ଭୂଇଁ ।
ମାଡ଼ୁଆ ମୋହନ ମାଡ ବିନୁ ଆନ ଗତି ତୋ କପାଳେ ନାହିଁ
ବଇଷ୍ଣବ ଭକ୍ତି କଡ଼ିଆ ଧରିଛି କରେ ଲଗାଇବା ପାଇଁ ।

ଗଣ ହୃଦୟର ମରକତମଣି ଗଣକବି ବୈଷ୍ଣବ ପାଣିଙ୍କର ସୃଷ୍ଟି ସମାର ବହୁ ରସରେ ରସାଳ ବହୁ ବର୍ଣ୍ଣରେ ବର୍ଣ୍ଣାଢ୍ୟ । ରସ ପିପାସୁ ପାଣି ଜଣେ ତୀବ୍ର ହାସ୍ୟରସିକ ଏବଂ ସଂସ୍କାରକ । ପ୍ରହ୍ଲାଦ ଚରିତରେ ସେ ଲେଖିଛନ୍ତି–

'କ୍ଷୀତିକି ଭିଡି ହେଲା ପ୍ରବଳ
ପଇସାରେ ପାନ ଦୁଇଟା ତିନିଟା ଟଙ୍କାରେ ଛ'ସେରେ ଅଧେ ସ୍ୱତନ–'

ପୁନଶ୍ଚ ହାସ୍ୟରସ ମାଧ୍ୟମରେ ସମାଜକୁ ଉପଦେଶ ଶିକ୍ଷାଦେବା ସହିତ ଗଣକବି ପାଣି ନୀତି ଅନୀତି ଓ ରୁଚି ଅରୁଚିର ବହୁ ଅଭିବ୍ୟକ୍ତି ତାଙ୍କ ଲେଖନୀରେ ସୃଷ୍ଟି ହୋଇଛି–

ଛି ଛି ମଦ ଖାଇବି ନାହିଁ କଳାପାଣି ପରି ଦିଶେ
ସେଇ କଳାପାଣି ପେଟରେ ପଡ଼ିଲେ ଚଉଦ ଭୁବନ ଦିଶେ ।

ଏକ ସାଗରରେ ବହୁ ତରଙ୍ଗ ଭଳି ଗଣକବି ବୈଷ୍ଣବ ସୃଷ୍ଟି ସାଗରରେ କୃତୀ ସର୍ଜନାର ବହୁ ବର୍ଣ୍ଣାଢ୍ୟ ବିଚିତ୍ର ତରଙ୍ଗ ଉତ୍କଳୀୟ ସାହିତ୍ୟ କାନନରେ ତାଙ୍କ ସଦୃଶ୍ୟ କବି ଖୁବ୍ କମ – ଇଂରାଜୀ ସାହିତ୍ୟରେ ଆଜି ସେକ୍ସପିୟର ଯେପରି ଏବଂ ଯେଉଁଥି ପାଇଁ ସୁପ୍ରତିଷ୍ଠିତ । ଓଡ଼ିଆ ସାହିତ୍ୟର ପୃଷ୍ଠଭୂମିରେ ଗଣକବି ବୈଷ୍ଣବ ପାଣି ସେହିଭଳି ସ୍ୱୀକୃତ ଓ ଗଣାଦୃତ, ସହସ୍ରାଧିକ ଗୀତିନାଟ୍ୟ ରଚନା ସହିତ ତା'ର ଉଚ୍ଚମାନ ଓ ନାଟ୍ୟ ପରମ୍ପରାର ମହନୀୟତା ସୃଷ୍ଟି କରିଥିବାରୁ ତାଙ୍କ ରଚନା ଆଜି କାଳଜୟୀ ହୋଇପାରିଛି ।

ଗୋଟିଏ ଶତାବ୍ଦୀ ସରିଗଲା । ୧୮୮୨ ରୁ ୧୯୮୯, ଶହେ ସାତ ବର୍ଷ ପୂର୍ବେ ଏହି କୁମାର ପୂର୍ଣ୍ଣମୀ ଦିନ ସେ ସାରସ୍ୱତ ଗଗନରେ ପୂର୍ଣ୍ଣଚନ୍ଦ୍ର ଭଳି ଉଦିତ ହୋଇଥିଲେ – ସେହି କାଳଜୟୀ ସ୍ରଷ୍ଟା ଯାତ୍ରାର କାଣ୍ଡାରୀ ଗଣକବି ବୈଷ୍ଣବ ପାଣି ଆଜି କୋଟି ହୃଦୟର ମୁକୁଟ ବିହୀନ ସମ୍ରାଟ–ଜ୍ୟୋସ୍ନାଭଳି ଅମଳିନ– ସଙ୍ଗୀତର ମୂର୍ଚ୍ଛନା ଭଳି ସାଶ୍ୱତ ।

---

ଶୁକ୍ଳେଶ୍ୱର
ମାହାଙ୍ଗା, କଟକ ।



ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ

# ଆମ କୃଷି ଓ କୃଷକ

ଶ୍ରୀ ରାସବିହାରୀ ବେହେରା

ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଆମର ଏ ରାଜ୍ୟକୁ ଦେଶର ଏକତମ ପ୍ରଗତିଶୀଳ ରାଜ୍ୟ ଭାବେ ପରିଣତ କରିବା ପାଇଁ ଗତ କେତେ ବର୍ଷ ଧରି ଆମେ ବିଭିନ୍ନ ପଦକ୍ଷେପମାନ ନେଇ ଆସୁଛୁ । ରାଜ୍ୟର ସମସ୍ତ ପ୍ରାକୃତିକ ସମ୍ପଦର ସଦୁପଯୋଗ କରି କୃଷି ଉତ୍ପାଦନ ବଢ଼ାଇବା ପାଇଁ ପଞ୍ଚାୟତ ସ୍ତରରୁ ଆମେ ଯେଉଁ ଯୋଜନାବଦ୍ଧ ପଦକ୍ଷେପମାନ ନେଇଥିଲୁ, ଅନୁକୂଳ ପାଣିପାଗ ତଥା ଆପଣମାନଙ୍କ ନିଷ୍ଠା ଯୋଗୁ ତାହା ଅନେକାଂଶରେ ସଫଳ ହୋଇ ପାରିଛି । ଗତବର୍ଷ ଆମର ଖାଦ୍ୟଶସ୍ୟ ଉତ୍ପାଦନ ୬୮ ଲକ୍ଷ ୫୬ ହଜାର ଟନ୍‌ରେ ପହଞ୍ଚି ପାରିଛି, ଯାହାକି ୧୯୮୬-୮୭ ବର୍ଷ ଅମଳ ତୁଳନାରେ ୪ ଲକ୍ଷ ୭୮ ହଜାର ଟନ୍ ଅଧିକ । ମାତ୍ର ଏଥିରେ ଆତ୍ମସନ୍ତୋଷର ଆଦୌ ଅବକାଶ ନାହିଁ । କାରଣ ଧାନ, ମକା, ମାଣ୍ଡିଆ, ଡାଲି ଜାତୀୟ ଆଦି ଶସ୍ୟର ଏକର ପିଛା ଅମଳ ଏବେ ମଧ୍ୟ ଆଶାନୁରୂପ ହୋଇ ପାରିନି ଏବଂ ସର୍ବଭାରତୀୟ ସ୍ତରରେ ଆମେ ବହୁତ ପଛରେ ଅଛେ ।

ଚିନାବାଦାମ ଉତ୍ପାଦନରେ ଆମର କୃଷୀ ଯେଉଁଳି ସାରା ଦେଶରେ ଅଗ୍ରଣୀ ହୋଇ ପାରିଛନ୍ତି, ସେହିଭଳି ସବୁପ୍ରକାର ଫସଲ କ୍ଷେତ୍ରରେ ଆମକୁ ଆଗୁଆ ହେବାକୁ ପଡ଼ିବ ।

ଚଳିତ ବର୍ଷ ଆମେ ୮୨ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଓ ୨୦-୫୦ ଲକ୍ଷ ଟନ୍ ତୈଳବୀଜ ଅମଳ କରିବା ପାଇଁ ଲକ୍ଷ୍ୟ ରଖିଛୁ । ଏହି ଲକ୍ଷ୍ୟ ହାସଲ ପାଇଁ କୃଷୀ ଭାଇମାନଙ୍କୁ ବିହନ, ସାର, କୃଷି ଋଣ ଓ ଜଳସେଚନ ସୁବିଧା ଯୋଗାଇ ଦେବାର ସରକାରୀ ସ୍ତରରେ ବ୍ୟବସ୍ଥା କରାଯାଇଛି ।

ଧାନ ଆମ ରାଜ୍ୟର ପ୍ରଧାନ ଫସଲ । ଗତ ୫ ବର୍ଷ ଧରି ରାଜ୍ୟର ବଛା ବଛା ବ୍ଲକ୍‌ରେ ଧାନ ଉତ୍ପାଦନ ବଢ଼ାଇବା ପାଇଁ ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା କାର୍ଯ୍ୟକାରୀ ହୋଇ ଆସୁଛି । ଗତବର୍ଷ ଏହି ଯୋଜନା ୬୩ଟି ବ୍ଲକ୍‌ରେ କାର୍ଯ୍ୟକାରୀ ହୋଇଥିଲା । ଚଳିତ ବର୍ଷ ଏହାକୁ ୧୨୯ଟି ବ୍ଲକ୍‌କୁ ସମ୍ପ୍ରସାରିତ କରାଯାଇଛି । ଏକ ସମୀକ୍ଷାରୁ ଜଣାଯାଇଛି ଯେ ଗତବର୍ଷ ପ୍ରସ୍ତାବ ଯୋଜନାଭୁକ୍ତ ବ୍ଲକ୍‌ମାନଙ୍କରେ ଜାଲୁଅ କମ୍ କମିଯାଇଥିଲେ ମଧ୍ୟ ହେକ୍ଟର୍ ପ୍ରତି ଚାଉଳ ଅମଳ ୧,୪୦୬ କିଲୋଗ୍ରାମ ହୋଇଥିଲା । ଅଥଚ ଏହି ସମୟରେ ଯୋଜନା ବାହାରେ ଥିବା ବ୍ଲକ୍‌ରେ ହାରାହାରି କେବଳ ୧,୨୩୬ କିଲୋଗ୍ରାମ ଚାଉଳ ଅମଳ ହେଉଛି । ଏହି ବ୍ଲକ୍‌ମାନଙ୍କରେ ବିଗତ ବର୍ଷମାନଙ୍କ ପରି ବିହନ, ସାର, ପୋକମରା ଔଷଧ ଓ ବିଭିନ୍ନ କୃଷି ସରଞ୍ଜାମମାନ ଚଳିତ ବର୍ଷ ମଧ୍ୟ ରିହାତି ମୂଲ୍ୟରେ କୃଷୀଙ୍କୁ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ଏହି ସବୁ ସୁବିଧା ସୁଯୋଗର ସଦୁପଯୋଗ କରି ଧାନର ଅମଳ ହେକ୍ଟର ପ୍ରତି ୧,୭୮୫ କିଲୋଗ୍ରାମ (ଚାଉଳ)କୁ ବଢ଼ାଇବାକୁ ହେବ ।

ଡାଲି ରାଜ୍ୟର ଦ୍ୱିତୀୟ ମୁଖ୍ୟ ଫସଲ । କେନ୍ଦ୍ର ସରକାରଙ୍କ ସହାୟତାରେ ରାଜ୍ୟର ସାତୋଟି ଜିଲ୍ଲା ଯଥା : ବାଲେଶ୍ୱର, ବଲାଙ୍ଗୀର, କଟକ, ଢେଙ୍କାନାଳ, ଗଞ୍ଜାମ, ପୁରୀ ଓ କୋରାପୁଟ ଜିଲ୍ଲାରେ "ଜାତୀୟ ଡାଲି କୃଷ ଉନ୍ନୟନ ଯୋଜନା" କାର୍ଯ୍ୟକାରୀ କରି, ଏହି ଫସଲର ଉତ୍ପାଦନ ବଢ଼ାଇବା ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇଛି । ଏଥିପାଇଁ ଉନ୍ନତ ବିହନ ଯୋଗାଣ, କ୍ଷେତ୍ର ପ୍ରଦର୍ଶନ, ସୁପର ଫସ୍‌ଫେଟ୍ ସାର ବ୍ୟବହାର, ରୋଗ ପୋକ ଆକ୍ରମଣରୁ ଫସଲକୁ ରକ୍ଷା କରିବା ଏବଂ ଖରାଦିନେ ଉଠା ଜଳସେଚନ ପମ୍ପ କିମ୍ବା ସେଚକୂପ ଆଦିରୁ ସେଚ ସୁବିଧାର ଉପଯୋଗ କରି ଅଧିକ ଜମିରେ ମୁଗ, ବିରି ଇତ୍ୟାଦି ଚାଷ କରିବା ଉପରେ ଗୁରୁତ୍ୱ ଦିଆଯାଉଛି । ସମ୍ପୃକ୍ତ ଜିଲ୍ଲାର କୃଷୀଭାଇଙ୍କୁ ବିହନ, ସାର, ଔଷଧ ଇତ୍ୟାଦି ରିହାତି ଦରରେ ଯୋଗାଇ ଦିଆଯାଉଛି । ଏ ସବୁ ସୁବିଧାର ଉପଯୋଗ କରି ରାଜ୍ୟର ହାରାହାରି ଅମଳ ହେକ୍ଟର୍ ପ୍ରତି ୫୬୯ କିଲୋଗ୍ରାମ ହୋଇଥିବା ବେଳେ ଯୋଜନାଭୁକ୍ତ ଜିଲ୍ଲାରେ କୃଷୀମାନେ ୫୬୮ କିଲୋଗ୍ରାମ ଅମଳ ପାଇବାରେ ସକ୍ଷମ ହେଲେଣି । ଗତବର୍ଷ ରବି ଋତୁରେ ବର୍ଷା କମିଯାଇଥିଲେ ମଧ୍ୟ ଏହା ସମ୍ଭବ ହୋଇଛି । ଚଳିତ ବର୍ଷ ଯୋଜନାଭୁକ୍ତ ଅଞ୍ଚଳରେ ଡାଲି ଶସ୍ୟର ହାରାହାରି ଅମଳ ହେକ୍ଟର୍ ପ୍ରତି ୫୯୦ କିଲୋଗ୍ରାମକୁ ବୃଦ୍ଧି ପାଇବା ପାଇଁ ଲକ୍ଷ୍ୟ ରଖାଯାଇଛି ।

୧୯୮୫-୮୬ ମସିହାରୁ ଜାତୀୟ ତୈଳ ବୀଜ ଉନ୍ନୟନ ଯୋଜନା ମଧ୍ୟ ଆମ ରାଜ୍ୟର ଗଞ୍ଜାମ, କୋରାପୁଟ, କଳାହାଣ୍ଡି, କଟକ, ଢେଙ୍କାନାଳ, ପୁରୀ ଓ ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି । ମୁଖ୍ୟତଃ ଚିନାବାଦାମ, ରାଶି, ସୋରିଷ ଓ ଅଳସୀ ଫସଲରୁ ଅଧିକ ଉତ୍ପାଦନ ପାଇବା ପାଇଁ ଏହି ଯୋଜନାରେ ଗୁରୁତ୍ୱ ଦିଆଯାଉଛି । ଏକ ଚକିଆ ପ୍ରଦର୍ଶନ କ୍ଷେତ୍ର ମାଧ୍ୟମରେ ଉନ୍ନତ ଚାଷ ପ୍ରଣାଳୀ କୃଷୀମାନଙ୍କୁ ଦେଖାଇ ଦେବା ସଙ୍ଗେସଙ୍ଗେ ଏହି ଯୋଜନାରେ ଉନ୍ନତ ବିହନ, ସାର ଓ ବିହନ ବୁଣା ଯନ୍ତ୍ର, ଚିନାବାଦାମ ଛଡ଼ାଇବା ଯନ୍ତ୍ର ଏବଂ ସ୍ପ୍ରେୟାର ପ୍ରଭୃତି କିଣିବା ପାଇଁ କୃଷୀମାନଙ୍କୁ ରିହାତି ଦେବାର ବ୍ୟବସ୍ଥା କରାଯାଉଛି । ଏହାର ଉପଯୋଗରେ ରାଜ୍ୟର ତୈଳ ବୀଜ ଉତ୍ପାଦନ ୯.୨୫ ଲକ୍ଷ

ଟିନ୍‌ରେ ପହଞ୍ଚାଇଲେ । ଚାଷୀ ଭାଇମାନଙ୍କୁ ଅନୁରୋଧ ସେମାନେ ଚଳିତ ବର୍ଷ ପାଇଁ ନିଷ୍ଠାର ସହିତ ଏ ସୁବିଧା ସୁଯୋଗର ସଦୁପଯୋଗ କରି ତୈଳ ବୀଜ ଉତ୍ପାଦନ ଆହୁରି ବୃଦ୍ଧି କରିବେ ।

୧୯୮୭-୮୮ ମସିହାଠାରୁ କେନ୍ଦ୍ର ସରକାର ରାଜ୍ୟର କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼ ଏବଂ ବଲାଙ୍ଗୀର ଜିଲ୍ଲାରେ ସୋୟାବିନ୍ ଚାଷ କରିବା ପାଇଁ ସାହାଯ୍ୟ କରି ଆସୁଛନ୍ତି । ଗତ ବର୍ଷ ପ୍ରାୟ ୭ ହଜାର ହେକ୍ଟରରେ ଏହା ଚାଷ କରାଯାଇଥିଲେ ମଧ୍ୟ ଚଳିତ ବର୍ଷ ସଫଳପୂର୍ବ ସମେତ ଏହି ସବୁ ଜିଲ୍ଲାରେ ୨୦ ହଜାର ହେକ୍ଟର୍ ଜମିରେ ସୋୟାବିନ୍ ଚାଷ କରାଯିବାର ଲକ୍ଷ୍ୟ ରଖାଯାଇଛି । କାରଣ, ଉଭୟ ଡାଲି ଓ ତୈଳ ବୀଜ ଫସଲ ଭାବେ ଏହା ଏବେ ଖୁବ୍ ଲୋକପ୍ରିୟ ହେବାରେ ଲାଗିଛି । ସମ୍ପୃକ୍ତ ଅଞ୍ଚଳର ଚାଷୀମାନଙ୍କୁ ଆବଶ୍ୟକୀୟ ବିହନ, ସାର ଇତ୍ୟାଦି ରିହାତି ମୂଲ୍ୟରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ଚାଷୀମାନଙ୍କ କ୍ଷେତରେ ପରୀକ୍ଷା ପାଇଁ କେତେକ ବିହନ ମିନିକିଟ୍ ପ୍ରତିଷ୍ଠା ମଧ୍ୟ ଯୋଜନା ପରିସରଭୁକ୍ତ ଚାଷୀଙ୍କୁ ଯୋଗାଇ ଦିଆଯିବ ।

ଝୋଟର ଉତ୍ପାଦନ ବଢ଼ାଇବା ପାଇଁ କଟକ, ବାଲେଶ୍ୱର ଓ କେନ୍ଦୁଝରର କେତୋଟି ବଛାବଛା ବ୍ଲକରେ "ସ୍ୱତନ୍ତ୍ର ଝୋଟ ଉନ୍ନୟନ ଯୋଜନା" କାର୍ଯ୍ୟକାରୀ କରାଯାଉଛି । ଏହି ପ୍ରୋଜେକ୍ଟ ଅଞ୍ଚଳରେ ଉନ୍ନତ ଚାଷ ପ୍ରଣାଳୀ ଶିକ୍ଷା ଦେବା ପାଇଁ କୃଷି ପ୍ରଦର୍ଶନ କ୍ଷେତ୍ର କରିବା, ବିହନ ତଥା ଡବଲ୍‌ଫସ୍‌ଫେଟ୍ ସାର ଏବଂ କୃଷି ଯନ୍ତ୍ରପାତିମାନ ରିହାତି ମୂଲ୍ୟରେ ଯୋଗାଇ ଦେବା ପାଇଁ ସୁବିଧା ରହିଛି । ଝୋଟ ଚାଷୀଙ୍କୁ ସେମାନଙ୍କ ଉତ୍ପାଦନର ଯଥାଯଥ ମୂଲ୍ୟ ଦେବାପାଇଁ, କେନ୍ଦ୍ରାପଡ଼ାଠାରେ ଏକ ସମବାୟ ସୂତ୍ରରେ ଝୋଟ କାରଖାନା ପ୍ରତିଷ୍ଠା ପାଇଁ ମଧ୍ୟ ସରକାର ଚେଷ୍ଟା କରୁଛନ୍ତି ।

ଝୋଟ ଭଳି କପା ମଧ୍ୟ ଏକ ଅର୍ଥକରୀ ତନ୍ତୁ ଫସଲ ରାଜ୍ୟରେ ଉତ୍ପାଦିତ କପାର ଉପଯୋଗ ପାଇଁ ବାରଗୋଟି ସୂତାକଳ ପ୍ରତିଷ୍ଠା କରାଯାଇଛି । ଏହି କାରଖାନାମାନଙ୍କୁ ବର୍ଷସାରା ଚଳେଇ ରଖିବା ପାଇଁ ପର୍ଯ୍ୟାପ୍ତ ପରିମାଣର କପା ଆବଶ୍ୟକ ହେଉଥିଲେ ମଧ୍ୟ ରାଜ୍ୟରେ ଉତ୍ପାଦିତ କପା ଏ ଆବଶ୍ୟକତାର କେତେକାଂଶ ମାତ୍ର ପୂରଣ କରିପାରୁଛି । ଏଣୁ କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ଗଞ୍ଜାମ ଓ ଢେଙ୍କାନାଳ ଜିଲ୍ଲାମାନଙ୍କରେ କପା ଚାଷର ପ୍ରସାର ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଉଛି । ଏକ ମରୁଡ଼ି ସହଣୀ ଫସଲ ଭାବେ, କପା ଏହି ଜିଲ୍ଲାମାନଙ୍କରେ ବେଶ ଲୋକପ୍ରିୟ ହେଉଛି । ତେବେ, ଖରିଫ୍ କପାରେ ପୋକ ରୋଗ ଲାଗି କ୍ଷତି କରିବାର ସମ୍ଭାବନା ଥିବାରୁ କପା ଚାଷୀମାନଙ୍କୁ ପୋକମରା ଔଷଧକିଟ୍‌ମାନ ସରକାରଙ୍କ ତରଫରୁ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ରାଜ୍ୟରେ ବହୁଳ ଭାବେ କପା ଚାଷ କରି ରାଜ୍ୟରେ ଥିବା ସୂତାକଳଗୁଡ଼ିକ ବର୍ଷସାରା ଚଳାଇ ରଖିବାକୁ ଚାଷୀ ଭାଇଙ୍କୁ ସରକାର ଆହ୍ୱାନ ଜଣାଉଛନ୍ତି ।

ଉନ୍ନତ ବିହନ ବ୍ୟବହାର ସାଙ୍ଗକୁ ଉତ୍ପାଦନ ବୃଦ୍ଧି ପାଇଁ ଅଧିକ ଖତ ଓ ସାର ବ୍ୟବହାର ମଧ୍ୟ ଅପରିହାର୍ଯ୍ୟ । ୧୯୮୭-୮୮ ମସିହାରେ ଆମେ ହେକ୍ଟର୍ ପ୍ରତି ୧୭-୩୨ କିଲୋଗ୍ରାମ ସାର ବ୍ୟବହାର କରିଥିଲେ । ୧୯୮୮-୮୯ ମସିହାରେ ଆମେ ଲକ୍ଷ୍ୟ ରଖିଥିଲୁ ଯେ, ହେକ୍ଟର୍ ପ୍ରତି ୩୦ କିଲୋଗ୍ରାମ ସାର ବ୍ୟବହାର କରିବୁ । ମାତ୍ର, ରବି ଋତୁରେ ବର୍ଷା ଛାଡ଼ିଯିବା ଯୋଗୁ ଡାଲିଆ ଏବଂ ଅନ୍ୟାନ୍ୟ ରବି ଫସଲର ଚାଷ ସୀମିତ ହୋଇଗଲା । ଫଳରେ ରବି ଋତୁରେ ସାର ବ୍ୟବହାର ଆଶାନୁରୂପ ହୋଇ ପାରିଲା ନାହିଁ । ଏହା ସତ୍ତ୍ୱେ ୧୯୮୭-୮୮ ମସିହା ରବି ଋତୁରେ ହେକ୍ଟର୍ ପ୍ରତି ୨୭-୩୭ କିଲୋଗ୍ରାମ ସାର ବ୍ୟବହାର କରାଯାଇଥିବା ବେଳେ ଗତ ବର୍ଷ ୩୨-୧୦ କିଲୋଗ୍ରାମ ସାର ବ୍ୟବହାର କରାଯାଇ ପାରିଛି ।ପାଗ ଅନୁକୂଳ ହୋଇଥିଲେ ଆମେ ନିଶ୍ଚୟ ଅଧିକ ସାର ବ୍ୟବହାର କରି ହେକ୍ଟର୍ ପ୍ରତି ହାରାହାରି ୩୦ କିଲୋଗ୍ରାମ କିମ୍ବା ତା'ଠାରୁ ଅଧିକ ସାର ବ୍ୟବହାର କରି ପାରିଥାନ୍ତେ । ମାତ୍ର, ଗତବର୍ଷ ଆମେ ହେକ୍ଟର୍ ପ୍ରତି ହାରାହାରି ୨୪-୨୫ କିଲୋଗ୍ରାମ୍ ସାର ବ୍ୟବହାର କରିଛୁ । ଚଳିତ ବର୍ଷ ହେକ୍ଟର୍ ପ୍ରତି ୫୦ କିଲୋଗ୍ରାମ୍ ସାର ବ୍ୟବହାର କରିବା ପାଇଁ ଲକ୍ଷ୍ୟ ରଖାଯାଇଛି । ଏହି ଲକ୍ଷ୍ୟ ପୂରଣ ପାଇଁ ଛୋଟ ପ୍ୟାକେଟ୍‌ରେ ସାର ବିକ୍ରି ସୁବିଧା, ବିକ୍ରୟ କେନ୍ଦ୍ରର ସଂଖ୍ୟା ବୃଦ୍ଧି, ବିଭିନ୍ନ ଯୋଜନା ମାଧ୍ୟମରେ ସାର କିଣାରେ ରିହାତି ଏବଂ ସାର କିଣିବା ପାଇଁ ପର୍ଯ୍ୟାପ୍ତ ଋଣ ସୁବିଧା ଦିଆଯାଉଛି । ଚାଷୀ ଭାଇମାନେ ଏହି ସବୁ ସୁବିଧା ସୁଯୋଗର ସଦୁପଯୋଗ କରି ସାର ବ୍ୟବହାର ଲକ୍ଷ୍ୟ ପୂରଣ କରି ପାରିବେ ।

ରାଜ୍ୟ କୃଷି ବିଭାଗ, କୃଷି ବିଶ୍ୱବିଦ୍ୟାଳୟ ଏବଂ କେନ୍ଦ୍ରୀୟ ଧାନ ଗବେଷଣା ସଂସ୍ଥା ତରଫରୁ ବୈଜ୍ଞାନିକ କୃଷି କୌଶଳ ଉପରେ ଅନବରତ ଗବେଷଣା କରାଯାଉଛି । ସ୍ଥାନୀୟ ପାଣିପାଗ ଉପରେ ଭିତ୍ତିକରି ବିଭିନ୍ନ ଜିଲ୍ଲାରେ ଏଥିପାଇଁ ଗବେଷଣା କେନ୍ଦ୍ରମାନ ମଧ୍ୟ ରହିଛି । ଏହି କେନ୍ଦ୍ରମାନଙ୍କର ଗବେଷଣା ପ୍ରସୂତ ଜ୍ଞାନକୌଶଳ ରାଜ୍ୟର କୃଷି ଉତ୍ପାଦନ ବୃଦ୍ଧିରେ ଯଥେଷ୍ଟ ସାହାଯ୍ୟ କରିଛି । ଗତ ଦିନମାନଙ୍କ ଭଳି ଆସନ୍ତା ଦିନଗୁଡ଼ିକରେ ମଧ୍ୟ ଏହି ସବୁ ଜ୍ଞାନକୌଶଳ ତାଲିମ ଓ ପରିଦର୍ଶନ କାର୍ଯ୍ୟକ୍ରମ ମାଧ୍ୟମରେ ଚାଷୀ ଭାଇମାନଙ୍କ ନିକଟରେ ପହଞ୍ଚାଇ ଦିଆଯିବ । ମାତ୍ର, ନିଷ୍ଠାର ସହିତ ଏଗୁଡ଼ିକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ କୃଷକମାନଙ୍କର ହିଁ ସବୁଠାରୁ ଅଧିକ ।

ରାଜ୍ୟରେ ଫଳ ଚାଷର ଉନ୍ନୟନ ପାଇଁ ସରକାରଙ୍କ ତରଫରୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଛି । ଅଣଜଳସେଚିତ ଡିହ ଜମିମାନଙ୍କରେ ଫଳ ଚାଷର ପ୍ରସାର ପାଇଁ ଆପଣମାନେ ଆଗ୍ରହୀ ହେବା ଦରକାର । ଏହାଦ୍ୱାରା ଡିହ ଜମିରୁ ନିଶ୍ଚିତ ଲାଭ ପାଇଁ ସୁଯୋଗ ସୃଷ୍ଟି କରାଯାଇ ପାରିବ । ବିଭିନ୍ନ ଯୋଜନା ମାଧ୍ୟମରେ ରାଜ୍ୟରେ ଫଳ ଚାଷର ବିକାଶ ପାଇଁ ନାନାପ୍ରକାର ପ୍ରୋତ୍ସାହନ ସୁବିଧା ମଧ୍ୟ ରହିଛି । ଚାଷୀମାନେ ଏହାର ସୁବିଧା ନେବେ ବୋଲି ମୋର ଆଶା ।

ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ଜଳ ଅମଳ ପ୍ରକଳ୍ପ ଯୋଜନା ମଧ୍ୟ କାର୍ଯ୍ୟକାରୀ ହେଉଛି । ଏହି ପ୍ରକଳ୍ପ ମାଧ୍ୟମରେ ଅଣଜଳସେଚିତ ଅଞ୍ଚଳର ନଷ୍ଟ ହୋଇଯାଉଥିବା ବର୍ଷା ପାଣିକୁ ଅଟକାଇ, ଠିକ୍ ସମୟରେ ଫସଲକୁ ମରୁଡ଼ିରୁ ରକ୍ଷାକରାଯାଇ ପାରିଛି । ଜଳ ଅମଳ ପ୍ରକଳ୍ପର ସଞ୍ଚିତ ଜଳର ଉପଯୋଗ କରି କୃଷକମାନେ ଅଧିକ ଜମିରେ ବିଭିନ୍ନ ଫସଲ କରି ପାରିବେ ।

ଚାଷର ଉନ୍ନତି ପାଇଁ ସମବାୟର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଗତବର୍ଷ ଖରିଫ ଋତୁରେ କୃଷି ଉତ୍ପାଦନ ବୃଦ୍ଧି ପାଇଁ ରାଜ୍ୟର ୨,୨୬,୬୯୯ ଜଣ ଚାଷୀଙ୍କୁ ୩୪ କୋଟି ୬୮ ଲକ୍ଷ ଟଙ୍କା ସ୍ୱଳ୍ପକାଳୀନ ଋଣ ଦିଆଯାଇଥିଲା । ରବି ଋତୁରେ ୨୭ କୋଟି ୭୫ ଲକ୍ଷ ଟଙ୍କା ସ୍ୱଳ୍ପକାଳୀନ ଋଣ ଦେବାର ଲକ୍ଷ୍ୟ ରଖାଯାଇଥିବା ସ୍ଥଳେ ଫେବୃୟାରୀ ଶେଷ ସୁଦ୍ଧା ୭୭, ୩୨୭ ଜଣ ଚାଷୀଙ୍କୁ ୧୬ କୋଟି ୫୮ ଲକ୍ଷ ଟଙ୍କା ଋଣ ଦିଆଯାଇଥିଲା । ଚଳିତ ବର୍ଷ ଖରିଫ ଋତୁରେ ୭୫ କୋଟି ଟଙ୍କା ସ୍ୱଳ୍ପକାଳୀନ ଋଣ ଦେବାର ଲକ୍ଷ୍ୟ ରଖାଯାଇଛି ।

ସେହିଭଳି ଚଳିତ ସମବାୟ ବର୍ଷରେ ଫେବୃୟାରୀ ମାସ ଶେଷ ସୁଦ୍ଧା ମଧ୍ୟମକାଳୀନ ଋଣ ଆକାରରେ ୮ କୋଟି ୮୯ ଲକ୍ଷ ଟଙ୍କା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ଆର୍ଥିକ ସହାୟତା ଦିଆଯାଇଛି । ଏହା ବ୍ୟତୀତ ଭୂ-ଉନ୍ନୟନ ବ୍ୟାଙ୍କଗୁଡ଼ିକ ଫେବୃୟାରୀ ଶେଷ ସୁଦ୍ଧା ୮୬୭ ଲକ୍ଷ ଟଙ୍କା ଦୀର୍ଘକାଳୀନ ଋଣ ମଧ୍ୟ ଦେଇଛନ୍ତି । ଏ ବାବଦରେ ଚଳିତ ବର୍ଷ ୧୦ କୋଟି ଟଙ୍କା ଋଣ ଦେବାର ଲକ୍ଷ୍ୟ ରଖାଯାଇଛି ।

ସେହିଭଳି ସ୍ୱତନ୍ତ୍ର ଯୋଜନା ଅନ୍ତର୍ଭୁକ୍ତ ଅଞ୍ଚଳରେ ମଧ୍ୟ ଚାଷୀମାନଙ୍କୁ ବିଭିନ୍ନ କୃଷି ସରଞ୍ଜାମ କିଣିବା ପାଇଁ ଦରକାର ଅନୁଯାୟୀ ଋଣ ଦେବାର ପର୍ଯ୍ୟାପ୍ତ ବ୍ୟବସ୍ଥା କରାଯାଇଛି । ମାତ୍ର, ଋଣ ନେବା ପାଇଁ ସମବାୟ ସମିତିଗୁଡ଼ିକୁ ସକ୍ରିୟ କରିବାକୁ ହେବ । ଋଣ ଗ୍ରହୀତାମାନେ ଠିକ୍ ସମୟରେ ଋଣ ପରିଶୋଧ କରି ନପାରିଲେ, ଏଗୁଡ଼ିକ ସକ୍ରିୟ ହେବା

ଷୀ କୃଷି ଉତ୍ପାଦନରେ ଅଂଶ ଗ୍ରହଣ କରିବା ସମ୍ଭବ ହେବ ନାହିଁ। ସ୍ଥାମାନେ ଏ ଦିଗଟି ପ୍ରତି ବିଶେଷ ଭାବେ ଧ୍ୟାନ ଦେଇ ସମବାୟ ଷ୍ଠାନମାନ ଯେପରି କୃଷୀମାନଙ୍କର ସହାୟତା କରିପାରିବ ତାହା ଦେଖିବେ।

ବନ୍ୟା, ମରୁଡ଼ି ଆମର ଚିର ସହଚର। ୧୯୮୭ ମସିହାର ମରୁଡ଼ି ଯୋଗୁ ରାଜ୍ୟର ଧାନ ଫସଲ ଉତ୍ପାଦନ ଯେଉଁଳି ଆର୍ଥିକ କ୍ଷତି ହେଲା, ତାହା ଭରଣା କରିବା କୃଷୀଙ୍କ ପାଇଁ ସମ୍ଭବ ହେଲା ନାହିଁ। ଫସଲ ବୀମା ଯୋଜନା ମାଧ୍ୟମରେ ୨ ଲକ୍ଷ ୬୨ ହଜାର କୃଷୀଙ୍କୁ ୧୩ କୋଟି ୧୯ ଲକ୍ଷ ଟଙ୍କା କ୍ଷତିପୂରଣ ଦିଆଯାଇ ଏହାର ମୁକାବିଲା କରାଗଲା। ଓଡ଼ିଶା ବର୍ତ୍ତମାନ ଦେଶର ସର୍ବପ୍ରଥମ ରାଜ୍ୟ, ଯେଉଁଠି ଫସଲ ବୀମା ଯୋଜନା ପଞ୍ଚାୟତ ସ୍ତରରୁ କାର୍ଯ୍ୟକାରୀ କରାଯାଉଛି। ଉନ୍ନତ କୃଷି ପ୍ରଣାଳୀ ଅବଲମ୍ବନ କରିବାରେ ଫସଲ ବୀମା ଯୋଜନା ବହୁ ଭାବରେ ଆମର କୃଷୀଙ୍କୁ ସାହାଯ୍ୟ କରିବ ବୋଲି ମୋର ଆଶା। ଚଳିତ ବର୍ଷ ଅନୁକୂଳ ପାଣିପାଗ ଯୋଗୁ କୃଷି ଉତ୍ପାଦନ କ୍ଷେତ୍ରରେ ଏହା ଏକ ଉଲ୍ଲେଖନୀୟ ବର୍ଷ ହେବ ବୋଲି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି।








ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ୧୩୮ତମ ଜନ୍ମ ବାର୍ଷିକୀ ପାଳନ
ଅବସରରେ ଶିକ୍ଷା ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ





ଛାତ୍ର ଏକତା ଦିବସ ଅବସରରେ ଛାତ୍ରମାନଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଉଦ୍‌ବୋଧନ ।

# ଓଡ଼ିଶାର ଦାରିଦ୍ର୍ୟ କେତେ ?

**ଡକ୍ଟର୍ ବୈଦ୍ୟନାଥ ମିଶ୍ର**

ଓଡ଼ିଶାର ଦାରିଦ୍ର୍ୟ କେତେ ସେଥିପାଇଁ ଅନେକ ତର୍କ ବିତର୍କ ଚାଲିଛି । ଯୋଜନା କମିଶନ୍ ଯେଉଁ ଅନୁସାରେ ଦାରିଦ୍ର୍ୟର ସୀମା ନିରୂପଣ କରୁଛନ୍ତି, ତାକୁ ସମସ୍ତ ଅର୍ଥଶାସ୍ତ୍ରୀ କି ପରିସଂଖ୍ୟାନବିତ୍ ଗ୍ରହଣ କରୁ ନାହାନ୍ତି । ଉଦାହରଣ ସ୍ୱରୂପ ଯୋଜନା କମିଶନଙ୍କର ସିଦ୍ଧାନ୍ତ ଅନୁସାରେ ମଫସଲ ଅଞ୍ଚଳରେ ଜଣପିଛା ଦୈନିକ ୨୪୦୦ କାଲରି ଓ ସହର ଅଞ୍ଚଳରେ ଜଣପିଛା ୨୧୦୦ କାଲରିକୁ ଭିତ୍ତିକରି ଦାରିଦ୍ର୍ୟର ସୀମା ନିରୂପଣ କରାଯାଇଛି । ଏହି ସିଦ୍ଧାନ୍ତ ଅନୁସାରେ ୧୯୭୭–୭୮ରେ ସାରା ଭାରତରେ ହାରାହାରି ୪୮.୩ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଥିଲେ ବୋଲି ହିସାବ କରାଯାଇଛି – ମଫସଲରେ ୫୧.୨ ଭାଗ ଓ ସହରରେ ୩୮.୨ ଭାଗ । ଭାରତର ଜଣେ ବିଶିଷ୍ଟ ପରିସଂଖ୍ୟାନବିତ୍ ଡକ୍ଟର୍ ସୁ... (Dr. P.B.Sukhatme) ଏହି ହିସାବ ବିରୁଦ୍ଧରେ ମତ ଦେଇ କହିଛନ୍ତି ଯେ ବ୍ୟକ୍ତିପିଛା ହାରାହାରି ୨୪୦୦ କାଲରି ... ୨୧୦୦ କାଲରି ଅନୁସାରେ ଦାରିଦ୍ର୍ୟ ସୀମାରେଖା ନିର୍ଣ୍ଣୟ କରିବା ଠିକ୍ ହେଉନାହିଁ – ଗୋଟିଏ ସାବାଳକ ଶ୍ରମଜୀବୀର ଯେତେ କାଲରି ଦରକାର ଜଣେ ଛୋଟ ପିଲା କି ବୃଦ୍ଧ ଲୋକର ସେତେ କାଲରି ଦରକାର ନାହିଁ । ତେଣୁ ହାରାହାରି କାଲରି ହିସାବରେ ଦାରିଦ୍ର୍ୟ ନିର୍ଣ୍ଣୟ କରିବା ଅର୍ଥ ବ୍ୟକ୍ତିଗତ ପ୍ରଭେଦକୁ ଉପେକ୍ଷା କରିବା । ତେଣୁ ସେ ହିସାବ କରି କହିଛନ୍ତି ଯେ ୧୯୭୭–୭୮ରେ ସହରରେ ମୋଟେ ୨୫ ଭାଗ ଲୋକ ଓ ମଫସଲରେ ୧୫ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି । ଭାରତର ଅନ୍ୟ ଜଣେ ବରିଷ୍ଠ ଅର୍ଥଶାସ୍ତ୍ରୀ ଡକ୍ଟର୍ କେ. ଏନ୍. ରାଜ୍ ମତ ପ୍ରକାଶ କରି କହିଛନ୍ତି ଯେ ଖାଲି କାଲରିକୁ ହିସାବ କରି ଦାରିଦ୍ର୍ୟ ସୀମା ନିରୂପଣ କରିବା ଉଚିତ ନୁହେଁ । ମଣିଷ ଜୀବନରେ ଶିକ୍ଷା ଓ ସ୍ୱାସ୍ଥ୍ୟ ପ୍ରଭୃତି ଜିନିଷର କିଛି ଆବଶ୍ୟକତା ଅଛି । ଏହାକୁ ଜୀବନର ନିମ୍ନତମ ଆବଶ୍ୟକୀୟ ଦ୍ରବ୍ୟ (minimum needs) ବୋଲି ଯଦି ଧରାଯାଏ, ତାହାହେଲେ ଭାରତରେ ପ୍ରାୟ ୬୦ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ଅଛନ୍ତି ବୋଲି କୁହାଯିବ । ଆମେ କେବଳ ଦୁଇଜଣ ବିଶିଷ୍ଟ ସମାଜବିଜ୍ଞାନୀଙ୍କ ମତ ଉଲ୍ଲେଖ କରିଛୁ । ଏହା ବ୍ୟତୀତ ଅନେକ ବିଶିଷ୍ଟ ସମାଜବିଜ୍ଞାନୀ ଏହି ଆଲୋଚନାରେ ଭାଗ ନେଇ ନିଜର ଭିନ୍ନଭିନ୍ନ ମତ ପ୍ରକାଶ କରିଛନ୍ତି । ତେବେ ମୋଟାମୋଟି ଯୋଜନା କମିଶନଙ୍କର ହିସାବ ଅନୁସାରେ ଭାରତରେ ଦାରିଦ୍ର୍ୟର ସୀମା ନିରୂପଣ କରାଯାଉଛି । ତେଣୁ ସେହି ହିସାବ ଅନୁସାରେ ଆମେ ମଧ୍ୟ ଭିନ୍ନଭିନ୍ନ ରାଜ୍ୟର ଦାରିଦ୍ର୍ୟର ସୀମା ହିସାବ କରୁଛୁ ।

ଯୋଜନା କମିଶନଙ୍କ ତରଫରୁ ୧୯୭୯ ମସିହାରେ କେତେଜଣ ବିଶିଷ୍ଟ ଅର୍ଥଶାସ୍ତ୍ରୀଙ୍କୁ ନେଇ ସର୍ବନିମ୍ନ ଆବଶ୍ୟକୀୟ ଦ୍ରବ୍ୟ ଓ ଫଳପ୍ରଦ ଖାଉଟି ଜିନିଷର ଚାହିଦା (Minimum Needs & Effective Consumption Demand) ନିରୂପଣ କରିବା ପାଇଁ ଏକ ଟାସ୍କ ଫୋର୍ସ (Task force) ଗଠନ କରାଯାଇଥିଲା । ସେହି ଟାସ୍କ ଫୋର୍ସ ପୂର୍ବୋକ୍ତ କାଲରିକୁ ଭିତ୍ତି କରି ହିସାବ କରିଥିଲେ ଯେ ୧୯୭୩–୭୪ ମୂଲ୍ୟସୂଚୀ ଅନୁସାରେ ମଫସଲ ଅଞ୍ଚଳରେ ବ୍ୟକ୍ତିପିଛା ମାସିକ ୪୯ ଟଙ୍କା ୯ ପଇସା ଓ ସହର ଅଞ୍ଚଳରେ ୫୬ ଟଙ୍କା ୬୪ ପଇସା ଦାରିଦ୍ର୍ୟର ସୀମାରେଖା ବୋଲି ଗ୍ରହଣ କରାଯିବ । ଯୋଜନା କମିଶନ୍ ସେହି ହିସାବ ଅନୁସାରେ ୩୨ତମ ଏନ୍. ଏସ୍. ଏସ୍. ରିପୋର୍ଟର ୧୯୭୭–୭୮ ମସିହାର ଖାଉଟି ଖର୍ଚ୍ଚ ସାହାଯ୍ୟରେ (32nd round of N.S.S. data on consumer expenditure for 1977-78) ଭାରତର ଓ ପ୍ରତ୍ୟେକ ରାଜ୍ୟର ଦାରିଦ୍ର୍ୟ ଲୋକମାନଙ୍କର ସଂଖ୍ୟା ନିରୂପଣ କରିଥିଲେ । ଏହି ସଂଖ୍ୟା ନିରୂପଣ କରିବାରେ ଯୋଜନା କମିଶନ୍ ସି. ଏସ୍. ଓ. (Central Statistical Organisation) ରୁ ସଂଗୃହୀତ ମୂଲ୍ୟସୂଚୀର ସାହାଯ୍ୟ ନେଇ ଏନ୍. ଏସ୍. ଏସ୍. ଡେଟା (Data)

ଓ ସି. ଏସ୍. ଓ. ଡେଟା ଭିତରେ କେତେକ ସମନ୍ୱୟ ପ୍ରତିଷ୍ଠା କରିଥିଲେ । ଖାଲି ୩୨ତମ ଏନ୍. ଏସ୍. ଏସ୍. ଡେଟାକୁ ନେଇ ୧୯୭୭–୭୮ରେ ଭାରତର ଦାରିଦ୍ର୍ୟର ସୀମାରେଖା ସ୍ୱୀକୃତ ହୋଇ ନ ଥିଲା । ସେତେବେଳେ ଯଦି ଖାଲି ଏନ୍. ଏସ୍. ଏସ୍. ଦ୍ୱାରା ସଂଗୃହୀତ ଡେଟାକୁ ନେଇ ଭାରତର ଦାରିଦ୍ର୍ୟର ସୀମା ନିରୂପଣ କରାଯାଇଥାନ୍ତା, ତାହାହେଲେ ଯୋଜନା କମିଶନ୍ ଭାରତ ପାଇଁ ଓ ଭିନ୍ନ ଭିନ୍ନ ରାଜ୍ୟ ପାଇଁ ଯେଉଁ ଦାରିଦ୍ର୍ୟ ସୀମା ସ୍ଥିର କରିଥିଲେ, ତାହା ଗୃହୀତ ହୋଇ ନ ଥାନ୍ତା । ନିମ୍ନଲିଖିତ ହିସାବରୁ ଏହାର ସତ୍ୟତା ଉପଲବ୍ଧି କରି ହେବ । ଆମେ ଏଠାରେ କେବଳ ଭାରତ ଓ ଓଡିଶାର ହିସାବ ଦେଉଛୁ । ପ୍ରବନ୍ଧଟିକୁ ସୀମା ଭିତରେ ରଖିବା ପାଇଁ ଅନ୍ୟାନ୍ୟ ରାଜ୍ୟର ହିସାବ ଦେଇ ନାହୁଁ ।

ଓ ସି. ଏସ୍. ଓ. (CSO) ଦ୍ୱାରା ସଂଗୃହୀତ ମୂଲ୍ୟସୂଚୀ ଭିତରେ ସମନ୍ୱୟ ଆଣି ସାରା ଭାରତ ପାଇଁ ଓ ପ୍ରତ୍ୟେକ ରାଜ୍ୟ ପାଇଁ ଦାରିଦ୍ର୍ୟ ସୀମା ନିର୍ଣ୍ଣୟ କଲେ । ସେହି ହିସାବ ଅନୁସାରେ ସାରା ଭାରତର ମଫସଲ ଅଞ୍ଚଳରେ ବ୍ୟକ୍ତିପିଛା ମାସିକ ଖାଉଟି ଖର୍ଚ୍ଚ ୧୦୧ ଟଙ୍କା ୮୦ ପଇସା ଓ ସହର ଅଞ୍ଚଳରେ ବ୍ୟକ୍ତି ପିଛା ଖାଉଟୀ ଖର୍ଚ୍ଚ ୧୧୭ ଟଙ୍କା ୫୦ ପଇସା ଦାରିଦ୍ର୍ୟ ସୀମାରେଖା ବୋଲି ହିସାବ କରାଗଲା । ସେହି ହିସାବ ଅନୁସାରେ ଭାରତ ଓ ଭିନ୍ନ ଭିନ୍ନ ରାଜ୍ୟ ପାଇଁ ଦାରିଦ୍ର୍ୟ ସୀମା ନିର୍ଦ୍ଧାରଣ କରାଯାଇଛି । ଏହି ସମନ୍ୱୟ ପରିବର୍ତ୍ତେ ଖାଲି ଯଦି ଏନ୍. ଏସ୍. ଏସ୍. (NSS) ଦ୍ୱାରା ସଂଗୃହୀତ ଅମିଶ୍ରିତ ଡେଟା (Raw Data) ଅନୁଯାୟୀ ଭାରତ ଓ ଭିନ୍ନ ଭିନ୍ନ ରାଜ୍ୟର ଦାରିଦ୍ର୍ୟ ନିର୍ଦ୍ଧାରଣ କରାଯାଇଥାନ୍ତା, ତାହାହେଲେ ପ୍ରତ୍ୟେକ ରାଜ୍ୟରେ ଦାରିଦ୍ର୍ୟ

## ୧୯୭୭–୭୮ର ଦାରିଦ୍ର୍ୟ ସୀମା

| | ଖାଲି ଏନ୍.ଏସ୍.ଏସ୍.ର ଅମିଶ୍ରିତ ଡେଟା (Raw Data) ଅନୁସାରେ | | ଯୋଜନା କମିଶନଙ୍କର ଏନ୍.ଏସ୍.ଏସ୍. ଓ ସି.ଏସ୍.ଓ. ରୁ ସଂଗୃହୀତ ତଥ୍ୟର ସମନ୍ୱୟ ଅନୁସାରେ | |
|---|---|---|---|---|
| | ସହର | ମଫସଲ | ସହର | ମଫସଲ |
| ଭାରତ | ୪୦ | ୫୩ | ୩୮ | ୫୧ |
| ଓଡିଶା | ୪୯ | ୭୬ | ୪୨ | ୬୮ |

(କେରଳ ସରକାରଙ୍କର ହିସାବରୁ ସଂଗୃହୀତ)

ଏଥିରୁ ଦେଖାଯିବ ଯେ ୩୨ତମ ଏନ୍.ଏସ୍.ଏସ୍.ର ହିସାବ ଓ ଯୋଜନା କମିଶନ୍‌ଙ୍କର ହିସାବ ଭିତରେ ଭାରତରେ ଓ ଓଡିଶାରେ ଦାରିଦ୍ର୍ୟ ସୀମାରେ ଅନେକ ପ୍ରଭେଦ ଥିଲା । କେବଳ ଓଡିଶାରେ ନୁହେଁ, ସବୁ ରାଜ୍ୟରେ ମଧ୍ୟ । କିନ୍ତୁ ସେତେବେଳେ ଏହି ପ୍ରଭେଦ ସତ୍ତ୍ୱେ ଯୋଜନା କମିଶନ୍‌ଙ୍କ ହିସାବକୁ ସମସ୍ତେ ଗ୍ରହଣ କରିଥିଲେ ।

ଯୋଜନା କମିଶନ୍ ଯେତେବେଳେ ୧୯୭୩–୭୪ର ହିସାବକୁ ଭିତ୍ତି କରି ୧୯୮୩ ମସିହା ପାଇଁ ଦାରିଦ୍ର୍ୟ ସୀମାରେଖା ନିର୍ଣ୍ଣୟ କଲେ, ସେତେବେଳେ ମଧ୍ୟ ଏନ୍. ଏସ୍. ଏସ୍. (NSS) ଡେଟା

ଅନେକ ଅଧିକ ହୋଇଥାନ୍ତା – କେବଳ ଓଡିଶାରେ ନୁହେଁ । ତେଣୁ ଏଥିରେ ଓଡିଶା ପ୍ରତି ପକ୍ଷପାତ ବିଚାର ହୋଇଛି ବୋଲି ଯେଉଁ ଅଭିଯୋଗ ହେଉଛି, ତାହା ସତ୍ୟ ନୁହେଁ । ନିମ୍ନଲିଖିତ କେତୋଟି ଉଦାହରଣରୁ ଏହାର କିଛି ପ୍ରମାଣ ମିଳିପାରିବ ।

ଏଥିରେ ଆମେ ସବୁ ରାଜ୍ୟର ହିସାବ ଦେଇ ନାହୁଁ – କିନ୍ତୁ ଏନ୍. ଏସ୍. ଏସ୍.ର ୩୮ ତମ ଅମିଶ୍ରିତ ଡେଟା ଅନୁସାରେ ଯଦି ଦାରିଦ୍ର୍ୟର ସୀମା ହିସାବ କରାଯାଏ, ତାହାହେଲେ ସବୁ ରାଜ୍ୟରେ ପ୍ରଭେଦ ଦେଖିବାକୁ ମିଳୁଛି । ଉପରୋକ୍ତ ହିସାବ ଏହାର ଏକ ନମୁନା । କେରଳ ସରକାର ଏହି ପ୍ରଭେଦକୁ ହିସାବକୁ ନେଇ ତିନୋଟି ଆପତ୍ତି କରିଛନ୍ତି ।

## ୧୯୮୩–୮୪ ରେ ଶତକରା ଦାରିଦ୍ର୍ୟର ହାର

| | ଏନ୍.ଏସ୍.ଏସ୍.ର ଅମିଶ୍ରିତ ଡେଟା ଅନୁସାରେ | | ଯୋଜନା କମିଶନ୍ ହିସାବ ଅନୁସାରେ | |
|---|---|---|---|---|
| | ମଫସଲ | ସହର | ମଫସଲ | ସହର |
| ଗୁଜରାଟ | ୪୨ | | | |
| ମଧ୍ୟପ୍ରଦେଶ | ୬୦ | ୩୧ | | |
| ଉତ୍ତର ପ୍ରଦେଶ | ୫୫ | ୪୨ | ୨୮ | ୧୭ |
| ଜାମ୍ମୁ ଓ କାଶ୍ମୀର | ୪୫ | ୪୮ | ୫୦ | ୩୧ |
| ବିହାର | ୫୮ | ୪୩ | ୪୭ | ୪୦ |
| | ୫୧ | ୪୩ | ୧୬ | ୧୬ |
| ଓଡିଶା | ୭୪ | ୩୭ | | |
| | | ୫୬ | ୪୫ | ୨୯ |

(କେରଳ ସରକାରଙ୍କର ହିସାବ ଅନୁସାରେ)

(୧) ପ୍ରଥମ ଆପତ୍ତି ହେଉଛି ଯେ ପୂର୍ବରୁ କେବଳ ଦାରିଦ୍ର୍ୟ ଦୂରୀକରଣ ଯୋଜନା ବାବଦ ସାହାଯ୍ୟ ଦେବାବେଳେ ଏହି ଦାରିଦ୍ର୍ୟ ସୀମା ତଳେ ଥିବା ଲୋକମାନଙ୍କର ହିସାବ ନେଇ ସହାଯ୍ୟ ଦିଆ ଯାଉଥିଲା । ଏଥର ପ୍ରଥମ କରି ଅର୍ଥ କମିଶନ୍ ଦାରିଦ୍ର୍ୟକୁ ଭିତ୍ତି କରି ଆୟକର (Income Tax) ଓ ଉତ୍ପାଦନ କରର (Exise Duty) କେତେକ ଅଂଶ ବଣ୍ଟନ କରିଛନ୍ତି । ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ତ୍ରିଲୋଚନ କାନୁନଗୋ ଏବେ ଯେଉଁ କେତୋଟି ପ୍ରବନ୍ଧ ଲେଖି ଛନ୍ତି ସେଥିରେ କହିଛନ୍ତି ଯେ ଓଡିଶା ସରକାର ଯଦି ଯୋଜନା କମିଶନ୍‌ଙ୍କର ହିସାବକୁ ଆପତ୍ତି କରି ଏନ୍. ଏସ୍. ଏସ୍.ର ଦାରିଦ୍ର୍ୟ ହିସାବ ଅନୁସାରେ ଅଧିକ କର ବଣ୍ଟନ ପାଇଁ ଦାବୀ କରିଥାନ୍ତେ, ତାହାହେଲେ ଓଡିଶା ଅର୍ଥ କମିଶନ୍ କରିଆରେ ଅନେକ ଅଧିକ ସାହାଯ୍ୟ ପାଇ ପାରିଥାନ୍ତା । କେରଳ ସରକାର ଯୋଜନା କମିଶନ୍‌ଙ୍କ ଦ୍ୱାରା ପ୍ରସ୍ତୁତ ଦାରିଦ୍ର୍ୟ ସୀମା ବିରୁଦ୍ଧରେ ଅର୍ଥ କମିଶନ୍‌ଙ୍କର ଚେୟାରମାନ୍ ଶ୍ରୀଯୁକ୍ତ ସାଲ୍‌ଭେଙ୍କୁ ଚିଠି ଲେଖିଥିଲେ । ଶ୍ରୀଯୁକ୍ତ ସାଲ୍‌ଭେ ଉତ୍ତରରେ କହିଥିଲେ ଯେ ଅର୍ଥ କମିଶନ୍ କୌଣସି ଏକ ରାଜ୍ୟ ପାଇଁ ସ୍ୱତନ୍ତ୍ର ଭାବରେ ଦାରିଦ୍ର୍ୟର ସୀମା ସ୍ଥିର କରିବା ଉଚିତ ହେବ ନାହିଁ ।

(୨) କେରଳ ସରକାରଙ୍କର ଦ୍ୱିତୀୟ ଅଭିଯୋଗ ହେଲା ଯେ ଯେଉଁ ମେଥଡୋଲୋଜି ବା ରୀତି ବିଧାନ ଅନୁସରଣ କରାଯାଇ ଯୋଜନା କମିଶନ୍ ଦାରିଦ୍ର୍ୟ ସୀମା ରେଖା ନିର୍ଣ୍ଣୟ କରିଛନ୍ତି, ସେ ମେଥଡୋଲୋଜି ଠିକ ନୁହେଁ । ସେ ଏଥିରେ ଡକ୍ଟର୍ ବି. ଏସ୍. ମିନ୍‌ହାସ୍ (Dr. B. S. Minhas)ଙ୍କର କେତେକ ସିଦ୍ଧାନ୍ତକୁ ଉଦ୍ଧାର କରିଛନ୍ତି । ଆମେ ପୂର୍ବରୁ ଲେଖିଛୁ ଯେ ଅର୍ଥଶାସ୍ତ୍ରୀମାନଙ୍କ ଭିତରେ ଦାରିଦ୍ର୍ୟ ସୀମାରେଖା ନେଇ ଅନେକ ମତଭେଦ ଅଛି । ତେବେ ଡକ୍ଟର୍ ମିନ୍‌ହସ୍ ଯେଉଁ ଆପତ୍ତି କରିଛନ୍ତି, ତାହା ଏତେ ଗୁରୁତର ବୋଲି ମନେ ହେଉନାହିଁ । ଆମେ ପୂର୍ବରୁ କହିଛୁ ଯେ ଏନ୍. ଏସ୍. ଏସ୍.ର ତଥ୍ୟକୁ ସି. ଏସ୍. ଓ.ର ମୂଲ୍ୟସୂଚୀ ଅନୁଯାୟୀ ଦାରିଦ୍ର୍ୟର ସୀମା ନିର୍ଦ୍ଧାରଣ କରାଯାଇଛି । ଏଥିପାଇଁ ନିମ୍ନଲିଖିତ ତିନୋଟି କାରଣ ଅଛି ।

(କ) ଏନ୍. ଏସ୍. ଏସ୍.ରେ ସମସ୍ତ ଖାଉଟୀ ଦ୍ରବ୍ୟର ହିସାବ ନିଆଯାଏ ନାହିଁ । ଏନ୍. ଏସ୍. ଏସ୍.ରେ କେବଳ ବ୍ୟକ୍ତିକ ପରିବାରର (Private Household) ଖାଉଟୀ ଜିନିଷ ଖର୍ଚ୍ଚର ହିସାବ ନିଆଯାଏ । କିନ୍ତୁ ସି. ଏସ୍. ଓ.ରେ ବ୍ୟକ୍ତିକ ପରିବାର, ଘର ନ ଥିବା ଲୋକ (Houseless population) ଏବଂ ଅନୁଷ୍ଠାନିକ ପରିବାରରେ ଥିବା ଜନସଂଖ୍ୟାଙ୍କର (ଯଥା- ଜେଲଖାନା, ଡାକ୍ତରଖାନା ଓ ଅନାଥାଶ୍ରମ ଇତ୍ୟାଦି) ଖାଉଟି ଜିନିଷ ଖର୍ଚ୍ଚର ହିସାବ ମଧ୍ୟ ନିଆଯାଏ । ପୁଣି ଯେଉଁସବୁ ଲାଭହୀନ ଅନୁଷ୍ଠାନ ଓ ଦାତବ୍ୟ ଅନୁଷ୍ଠାନମାନେ (Non-profit and charitable institutions) ଜନମଙ୍ଗଳ ଓ ଧର୍ମସମ୍ବନ୍ଧୀୟ କାର୍ଯ୍ୟ ବାବଦରେ କିଛିକିଛି ସାହାଯ୍ୟ ଦିଅନ୍ତି, ସେହି ଅନୁଷ୍ଠାନର ଖାଉଟି ଜିନିଷ ଖର୍ଚ୍ଚର ହିସାବ ସି. ଏସ୍. ଓ. ତରଫରୁ ମଧ୍ୟ ନିଆଯାଏ । ଏଥିରୁ ଦେଖାଯିବ ଯେ ସି. ଏସ୍. ଓ. ତରଫରୁ ଯେତେ ଖାଉଟି ଜିନିଷର ହିସାବ ନିଆଯାଏ, ଏନ୍. ଏସ୍. ଏସ୍. ତୁଳନାରେ ତାହା ଅନେକ ଅଧିକ । ସି. ଏସ୍. ଓ. ବ୍ୟାପକ ଖାଉଟି ଜିନିଷର ହିସାବ ନେଉଥିବାରୁ, ତାକୁ ଭିତ୍ତି କରି ଖାଉଟି ଜିନିଷର ଦର ସ୍ଥିର କରିବାର ଯଥାର୍ଥତା ଅନେକ ଅଧିକ ।

(ଖ) ସି. ଏସ୍. ଓ. ତରଫରୁ ବେଶୀ ଖାଉଟି ଜିନିଷର ହିସାବ ନିଆଯାଉଥିବାରୁ, ଏନ୍. ଏସ୍. ଏସ୍.ର ବ୍ୟକ୍ତିକ ଖାଉଟି ଜିନିଷର ଖର୍ଚ୍ଚଠାରୁ (Private consumption expenditure) ଏହା ଅଧିକ । ଉଦାହରଣ ସ୍ୱରୂପ ଏହି ଖର୍ଚ୍ଚ ୧୯୭୨–୭୩ରେ ୬ ଭାଗ, ୧୯୭୭–୭୮ରେ ୧୨ ଭାଗ ଓ ୧୯୮୨–୮୩ରେ ୬ ଭାଗ ଅଧିକ । ଏ କଥା ଡକ୍ଟର୍ ମିନ୍‌ହାସ୍ ମଧ୍ୟ ନିଜେ ତାଙ୍କର ଲେଖାରେ ଉଲ୍ଲେଖ କରିଛନ୍ତି ।

(ଗ) ଏନ୍. ଏସ୍. ଏସ୍.ର ହିସାବ ପୂର୍ବରୁ ପ୍ରତ୍ୟେକ ବର୍ଷ କରାଯାଉଥିଲା । ୧୯୭୩–୭୪ ଠାରୁ ୫ ବର୍ଷରେ ଥରେ ଏହି ହିସାବ ସଂଗ୍ରହ କରାଯାଉଛି । କିନ୍ତୁ ସି. ଏସ୍. ଓ.ର ହିସାବ ପ୍ରତ୍ୟେକ ବର୍ଷ ସଂଗ୍ରହ କରାଯାଉଛି । ତେଣୁ ଏନ୍. ଏସ୍. ଏସ୍.ର ହିସାବକୁ ସି. ଏସ୍. ଓ. ର ହିସାବ ଅନୁଯାୟୀ ସମନ୍ୱୟ କରିବା ଦରକାର ।

ଡକ୍ଟର୍ ମିନ୍‌ହାସ୍ ଏଥିରୁ କୌଣସି କଥାକୁ ଆପତ୍ତି କରିବାର ଦେଖାଯାଇ ନାହିଁ । ତାଙ୍କର ଏକମାତ୍ର ପ୍ରଶ୍ନ ହେଉଛି ଯେ ଏହି ଦୁଇଟି ହିସାବକୁ ସହଜରେ ସିଧା ସଳଖ ଭାବରେ ତୁଳନା କରାଯାଇ ପାରିବ ନାହିଁ । ତାଙ୍କ ଭାଷାରେ . . .

"No easy and straight forward comparisions are therefore possible between the two sets of estimates."

ସହଜରେ ସିଧାସଳଖ ତୁଳନା କରାଯାଇ ପାରିବ ନାହିଁ । ସତ୍ୟ, କିନ୍ତୁ କିଛି ତ ପନ୍ଥା ବାହାର କରିବାକୁ ପଡିବ । ଆମେ ତ କହିବୁ ଯେ ଯଦି ସି. ଏସ୍. ଓ.ରେ ବିଭିନ୍ନ ଆୟଗୋଷ୍ଠୀମାନଙ୍କର ଡେଟା ଥାନ୍ତା, ତାହାହେଲେ ଏନ୍. ଏସ୍. ଏସ୍.ର ଡେଟା ଅନୁସାରେ ଦାରିଦ୍ର୍ୟ ସୀମା ନିର୍ଦ୍ଧାରଣ କରିବା ଦରକାର ପଡନ୍ତା ନାହିଁ । ଏନ୍. ଏସ୍. ଏସ୍.ରେ ଭିନ୍ନ ଭିନ୍ନ ଆୟଗୋଷ୍ଠୀର ଡେଟା ଥିବାରୁ ସି. ଏସ୍. ଓ ଦ୍ୱାରା ସଂଗୃହୀତ ମୂଲ୍ୟସୂଚୀର ସାହାଯ୍ୟ ନେଇ ଦାରିଦ୍ର୍ୟର ସୀମା ସ୍ଥିର କରାଯାଉଛି । ଏହା ବ୍ୟତୀତ ଆମେ ପୁଣି କହିବୁ ଯେ ଦାରି- ଦ୍ର୍ୟ ସୀମା ନିର୍ଦ୍ଧାରଣ କରିବା ପାଇଁ ଯୋଜନା କମିଶନ୍ ଯେଉଁ ହିସାବ ବାହାର କରିଛନ୍ତି, ସେଥିରେ ବେଶୀ କିଛି ଭୁଲ ନାହିଁ । ୧୯୮୩–୮୪ରେ ଦରିଦ୍ର ଲୋକମାନଙ୍କ ପାଇଁ ଏନ୍. ଏସ୍. ଏସ୍.ର ହିସାବ ଅନୁସାରେ ଯେଉଁ ଖାଉଟି ଦ୍ରବ୍ୟର ହିସାବ ନିଆଯାଇଛି, ସେଥିରେ ଖାଦ୍ୟ ସାମଗ୍ରୀ ଓ ଅଣଖାଦ୍ୟ ସାମଗ୍ରୀର ପରିମାଣ ସହର ଓ ମଫସଲ ପାଇଁ ନିମ୍ନଲିଖିତ ମତେ ହିସାବ କରାଯାଇଛି ।

## ଦରିଦ୍ର ଲୋକମାନଙ୍କ ପାଇଁ ଖାଉଟି ଦ୍ରବ୍ୟର ଶତକଡା ହାର (୧୯୮୩-୮୪)

| | ମଫସଲ ଅଞ୍ଚଳ | ସହର ଅଞ୍ଚଳ |
|---|---|---|
| ଖାଦ୍ୟ ସାମଗ୍ରୀ | ୭୧.୨୧ | ୬୮.୬୬ |
| ଅଣଖାଦ୍ୟ ସାମଗ୍ରୀ (ଯଥା– ପାନ, ଲୁଗାପଟା, ଯୋତା ଇତ୍ୟାଦି) | ୨୮.୭୭ | ୩୧.୩୪ |
| | ୧୦୦.୦୦ | ୧୦୦.୦୦ |

ଆମେ ସମସ୍ତ ଖାଦ୍ୟ ସାମଗ୍ରୀ ଓ ଅଣଖାଦ୍ୟ ସାମଗ୍ରୀ ଦ୍ରବ୍ୟର୍ ହିସାବ ଦେଇନାହୁଁ – କାରଣ ଏହା ଫଳରେ ପ୍ରବନ୍ଧଟି ଖୁବ୍ ଲମ୍ବା ହୋଇଯିବ । ଏହି ହିସାବ ଅର୍ଥ ହେଉଛି ଯେ ଦରିଦ୍ର ଲୋକମାନେ ଯେତେ ଖାଉଟି ଦ୍ରବ୍ୟ ଉପଭୋଗ କରୁଛନ୍ତି, ସେଥିରେ ଖାଦ୍ୟ ଦ୍ରବ୍ୟର ମାତ୍ରା ମଫସଲ ଅଞ୍ଚଳରେ ୭୧.୨୧ ଭାଗ ଓ ଅଣଖାଦ୍ୟଦ୍ରବ୍ୟର ମାତ୍ରା ୨୮.୭୭ ଭାଗ । ସେହିପରି ସହର ଅଞ୍ଚଳରେ ଖାଦ୍ୟଦ୍ରବ୍ୟର ମାତ୍ରା ୬୮.୬୬ ଭାଗ ଓ ଅଣଖାଦ୍ୟଦ୍ରବ୍ୟର ମାତ୍ରା ୩୧.୩୪ ଭାଗ । ଦରିଦ୍ର ଲୋକମାନେ ଯେଉଁସବୁ ଖାଉଟି ଦ୍ରବ୍ୟ ଉପଭୋଗ କରୁଛନ୍ତି, ସେହି ସବୁ ଦ୍ରବ୍ୟର ପାଇକାରୀ ମୂଲ୍ୟସୂଚୀ (୧୯୭୦-୭୧) ଅନୁସାରେ ୧୯୭୩-୭୪ଠାରୁ ୧୯୮୩-୮୪ ଭିତରେ କେତେ ଦର ବୃଦ୍ଧି ହୋଇଛି, ତା'ର ହିସାବ ନେଲେ ଦେଖାଯାଉଛି ଯେ ମଫସଲ ଓ ସହର ଅଞ୍ଚଳରେ ଏହି ଦର ୨ଗୁଣରୁ ସାମାନ୍ୟ କିଛି ଅଧିକ ହୋଇଛି ।

### ୧୯୭୩-୭୪ ଠାରୁ ୧୯୮୩-୮୪ ଭିତରେ ଦରିଦ୍ର ଲୋକମାନେ ଉପଭୋଗ କରୁଥିବା ଖାଉଟି ଦ୍ରବ୍ୟର ଦରବୃଦ୍ଧି

| | | |
|---|---|---|
| ମଫସଲ | .. | ୨.୦୬୪ |
| ସହର | .. | ୨.୦୭୦ |

ଏହି ମୂଲ୍ୟସୂଚୀ ଅନୁସାରେ ଯଦି ହିସାବ କରାଯିବ, ତାହାହେଲେ ଦେଖାଯିବ ଯେ ୧୯୮୩-୮୪ ମସିହାରେ ମଫସଲ ପାଇଁ ଦାରିଦ୍ର୍ୟ ସୀମା ମାସିକ ୧୦୧ ଟଙ୍କା ୩୦ ପଇସା ଓ ସହର ପାଇଁ ୧୧୭ ଟଙ୍କା ୨୦ ପଇସା । ଏହା ଏନ୍. ଏସ୍. ଏସ୍. ତରଫରୁ ସଂଗୃହୀତ ଖାଉଟି ଦ୍ରବ୍ୟ ଓ ୧୯୭୦-୭୧ର ପାଇକାରୀ ମୂଲ୍ୟସୂଚୀ ଅନୁସାରେ ହିସାବ କରାଯାଇଛି । ଯୋଜନା କମିଶନ୍ ସି. ଏସ୍. ଓ. ଦ୍ୱାରା ସଂଗୃହୀତ ତଥ୍ୟ ସାହାଯ୍ୟରେ ଏନ୍. ଏସ୍. ଏସ୍.ର ଖାଉଟି ଦ୍ରବ୍ୟ ଦରକୁ ସମନ୍ୱୟ କରି ୧୯୮୩-୮୪ ପାଇଁ ଯେଉଁ ଦାରିଦ୍ର୍ୟ ସୀମାରେଖା ନିର୍ଦ୍ଧାରଣ କରିଛନ୍ତି, ତାହା ହେଉଛି ଗ୍ରାମାଞ୍ଚଳ ପାଇଁ ବ୍ୟକ୍ତିପିଛା ମାସିକ ୧୦୧ ଟଙ୍କା ୮୦ ପଇସା ଓ ସହର ଅଞ୍ଚଳ ପାଇଁ ୧୧୭ ଟଙ୍କା ୫୦ ପଇସା । ଏଥିରୁ ଦେଖାଯିବ ଯେ ପୂର୍ବୋକ୍ତ ହିସାବ ସହିତ ଏହି ହିସାବରେ ବେଶୀ ପ୍ରଭେଦ ନାହିଁ । ଏତିକି ପ୍ରଭେଦ ଯେ ଯେଉଁସବୁ ଖାଉଟି ଦ୍ରବ୍ୟର ମୂଲ୍ୟସୂଚୀ ଏଥିରେ ନିଆଯାଇଛି, ସେଥିରେ ସବୁ ଖାଉଟି ଦ୍ରବ୍ୟ ସ୍ଥାନ ପାଇ ନାହିଁ – ଶତକଡା ୮୮ ଭାଗ ଖାଉଟି ଦ୍ରବ୍ୟ ମୂଲ୍ୟସୂଚୀର ହିସାବ ସ୍ଥାନ ପାଇଛି । କିନ୍ତୁ ଏହି ୮୮ ଭାଗରେ ପ୍ରଧାନ ପ୍ରଧାନ ଖାଉଟି ଦ୍ରବ୍ୟ ରହିଛି – ସାମାନ୍ୟ କେତୋଟି ଦ୍ରବ୍ୟ ବାଦ ଦିଆଯାଇଛି, କାରଣ ତା'ର ହିସାବ ନାହିଁ । ସେଥିପାଇଁ ଯୋଜନା କମିଶନ୍ କହିଛନ୍ତି ଯେ . . .

'Thus the C. S. O.'s private consumption deflator is a good proxy for the price rise in the consumption basket.' ଅର୍ଥାତ୍ ସି. ଏସ୍. ଓ ଦ୍ୱାରା ପ୍ରସ୍ତୁତ ତଥ୍ୟକୁ ଭିତ୍ତି କରି ଯୋଜନା କମିଶନ୍ ଯେଉଁ ଦାରିଦ୍ର୍ୟସୀମା ରେଖା ନିରୂପଣ କରିଛନ୍ତି, ତାହା ଖାଉଟି ଦ୍ରବ୍ୟର ମୂଲ୍ୟବୃଦ୍ଧିରେ ସମନ୍ୱୟ ରକ୍ଷା କରିପାରିଛି ।

ଏହା ବ୍ୟତୀତ ସି. ଏସ୍. ଓ. ହିସାବର ଅନ୍ୟ ଏକ ବିଶେଷତ୍ୱ ଅଛି – ତା'ର କାରଣ ସମୟର ପରିବର୍ତ୍ତନ ଯୋଗୁଁ ଦରିଦ୍ର ଲୋକମାନଙ୍କର ଖାଉଟି ଦ୍ରବ୍ୟରେ ଯେଉଁ ପରିବର୍ତ୍ତନ ଆସେ, ତାହା ସି. ଏସ୍. ଓ. ହିସାବରେ ସ୍ଥାନ ପାଇ ପାରେ । ସେଥିପାଇଁ ଯୋଜନା କମିଶନ୍ କହିଛନ୍ତି– "The use of CSO's consumption deflator (Private) is preferred over the use of the consumption basket as it implicitly takes care of the change in the consumption basket over time also."

ଏଥିରୁ ଦେଖାଯିବ ଯେ ଯୋଜନା କମିଶନ୍ ଯେଉଁ ଅନୁସାରେ ଦାରିଦ୍ର୍ୟ ହିସାବ କରିଛନ୍ତି, ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ସେଥିରେ କିଛି ଆପତ୍ତି କରିବାର ନାହିଁ ।

(୩) କେରଳ ସରକାର ଅନ୍ୟ ଏକ ଅଭିଯୋଗ କରିଛନ୍ତି– ସେ ଅଭିଯୋଗ ହେଉଛି ଯେ କେରଳରେ ଅନ୍ୟରାଜ୍ୟ ଅପେକ୍ଷା ମୂଲ୍ୟସୂଚୀ ବୃଦ୍ଧିହାର ଅଧିକ । ଖାଲି କେରଳରେ କାହିଁକି, ଅନ୍ୟ କେତେ ରାଜ୍ୟରେ ମଧ୍ୟ ଏହି ମୂଲ୍ୟସୂଚୀ ହାରାହାରି ଭାରତୀୟ ମୂଲ୍ୟସୂଚୀ ଅପେକ୍ଷା ଅଧିକ । କିନ୍ତୁ କେରଳର ଆୟ ମଧ୍ୟ ଅଧିକ । କେରଳରେ କୃଷିଶ୍ରମିକର ସର୍ବନିମ୍ନ ମଜୁରି ୩/୪ ବର୍ଷ ତଳେ ୩୦ ଟଙ୍କା ଥିଲା । ଏହା ଭିତରେ ଅହୁରି କିଛି ବୃଦ୍ଧି ହେଲାଣି । ଅନ୍ୟାନ୍ୟ କେତେକ ରାଜ୍ୟର ଏହି ମଜୁରି ହାର କେରଳର ମଜୁରି ହାରର ଅଧାଠାରୁ କମ । ପୁଣି କେରଳରେ କେତେକ ଜିନିଷର ଦର ଅଧିକ ଓ କେତେକ ଜିନିଷର ଦର

ମ । କେରଳକୁ ମଧ୍ୟ ବିଦେଶରୁ ଅନେକ ଅର୍ଥ ଆସୁଛି ଯାହାକି ଆସୁନାହିଁ । ତେଣୁ ପ୍ରତ୍ୟେକ ରାଜ୍ୟର ମୂଲ୍ୟସୂଚୀକୁ ରେ ଦାରିଦ୍ର୍ୟ ନିର୍ଦ୍ଧାରଣ କରିବା ଏତେ ସହଜ ନୁହେଁ । ସେ ହେଉ ଏ ଗୋଟିଏ ସ୍ୱତନ୍ତ୍ର ପ୍ରଶ୍ନ ଯାହାକି ଯୋଜନା କମିଶନ୍ ହୁଏତ ବିଚାର କରି ପାରନ୍ତି । କିନ୍ତୁ ଆମର କହିବାର କଥା ଯେ ଯେଉଁ ପନ୍ଥାକୁ ଭିତ୍ତି କରି ଯୋଜନା କମିଶନ୍ ଭାରତରେ ଓ ଭିନ୍ନ ଭିନ୍ନ ରାଜ୍ୟର ଦାରିଦ୍ର୍ୟ ନିର୍ଦ୍ଧାରଣ କରିଛନ୍ତି, ସେଥିରେ ବେଶୀ କିଛି ଭୁଲ ନାହିଁ ।



ଓଡ଼ିଶା ସରକାରୀ ମୁଦ୍ରଣାଳୟରେ ଶ୍ରୀ ଶ୍ରୀ ବିଶ୍ୱକର୍ମା ଦେବଙ୍କ ପୂଜା ମହୋତ୍ସବ

# ସ୍ୱାଧୀନତା ପୂର୍ବବର୍ତ୍ତୀ କାଳର ଜନଶିକ୍ଷା

ଡକ୍ଟର୍ ପ୍ରଭାକର ସୂପକାର

ଦେଶ ସ୍ୱାଧୀନତା ଲାଭ କରିବାର ବୟାଳିଶ ବର୍ଷ ହେଲା । ଏହି ସମୟ ମଧ୍ୟରେ ଜନ ସଂଖ୍ୟା ଯେପରି ଦ୍ରୁତ ଗତିରେ ବଢ଼ି ଚାଲିଛି, ନିରକ୍ଷର ଲୋକଙ୍କ ସଂଖ୍ୟା ସେପରି ବଢ଼ି ଚାଲିଛି । ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ୨ ଲକ୍ଷ ୪୨ ହଜାରରୁ ୫ଲକ୍ଷ ୨୦ ହଜାର, ମାଧ୍ୟମିକ ସ୍କୁଲ ୯ ହଜାରରୁ ୧ ଲକ୍ଷ ୩୦ ହଜାର, ହାଇସ୍କୁଲ ସଂଖ୍ୟା ୪ ହଜାରରୁ ୫୯ ହଜାର ପର୍ଯ୍ୟନ୍ତ ୧୯୮୫ ମସିହା ସୁଦ୍ଧା ବଢ଼ିଛି । ପ୍ରାଥମିକ ସ୍କୁଲର ଛାତ୍ରଛାତ୍ରୀ ସଂଖ୍ୟା ୨ କୋଟିରୁ ବଢ଼ି ୮ କୋଟି ୩୯ ଲକ୍ଷ, ହାଇସ୍କୁଲ ଛାତ୍ରଛାତ୍ରୀ ସଂଖ୍ୟା ୬ ଲକ୍ଷରୁ ବଢ଼ି ୨ କୋଟି ୩୮ ଲକ୍ଷ ହୋଇଛି । ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀ ସଂଖ୍ୟା ୨୯ ଗୁଣ ବଢ଼ିଛି । ଡାକ୍ତରୀ, ଇଞ୍ଜିନିୟରିଂ, ଗଣିତ ବିଜ୍ଞାନ ଇତ୍ୟାଦି ବିଭିନ୍ନ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରବଳ ଭିଡ଼ ।

ସମ୍ବିଧାନରେ ଲେଖାଥିଲା ଦେଶରୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନିରକ୍ଷରତା ଦୂର କରିବାକୁ ହେବ ଏବଂ ଦେଶରେ ଛଅ ବର୍ଷରୁ ଚଉଦ ବର୍ଷ ବୟସ ସୀମା ମଧ୍ୟରେ ଥିବା ସମସ୍ତ ବାଳକ ବାଳିକାମାନଙ୍କୁ ମାଗଣା ବାଧ୍ୟତାମୂଳକ ଶିକ୍ଷା ଦେବାକୁ ହେବ । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ୧୯୮୧ ଜନଗଣନାରେ ଦେଖାଗଲା ସମଗ୍ର ଭାରତବର୍ଷରେ ଶତକଡ଼ା ୩୬ ଭାଗ ଲୋକ ସାକ୍ଷର । ଦେଶ ସ୍ୱାଧୀନ ହେଲା ସମୟରେ ସମଗ୍ର ଭାରତର ମୋଟ ଲୋକସଂଖ୍ୟା ଯେତେ ଥିଲା, ଏବେ ଏ ଦେଶରେ ନିରକ୍ଷରଙ୍କ ସଂଖ୍ୟା ତହିଁରୁ ବେଶୀ ।

ନିରକ୍ଷରତା ଦୂରୀକରଣ ପାଇଁ ବ୍ୟାପକ ଅଭିଯାନ ଚାଲି ଆସିଛି । ନିୟମିତ ସ୍କୁଲ ଛାତ୍ରଛାତ୍ରୀଙ୍କ ଛଡ଼ା ପନ୍ଦରରୁ ୩୫ ବର୍ଷ ବୟସ ସୀମା ମଧ୍ୟରେ ଥିବା ପ୍ରତ୍ୟେକ ନିରକ୍ଷର କିଶୋର କିଶୋରୀ ଓ ଯୁବକ ଯୁବତୀଙ୍କୁ ସାକ୍ଷର କରିବା ପାଇଁ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ଚାଲି ଆସିଛି । ସେମାନଙ୍କ ପାଇଁ ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନର ଏବଂ ପ୍ରଚାରର ବ୍ୟବସ୍ଥା ହୋଇଛି । ଏବେ ଜାତୀୟ ସ୍ତରରେ ଜାତୀୟ ସାକ୍ଷରତା ମିଶନ୍ ପ୍ରତିଷ୍ଠା କରାଯାଇ, ସାକ୍ଷରତା ଅଭିଯାନକୁ ଅଧିକ ତ୍ୱରାନ୍ୱିତ କରିବାର ପ୍ରଚେଷ୍ଟା ହେଉଛି । ଗତବର୍ଷ ଓଡ଼ିଶାରେ କଟକ ଓ କଳାହାଣ୍ଡି ଜିଲ୍ଲାରେ ଜାତୀୟ ସାକ୍ଷରତା ମିଶନକୁ ଅଧିକ କାର୍ଯ୍ୟକାରୀ କରାଯାଇ କେତେ ଜନଶିକ୍ଷା ନିଲୟ ଖୋଲାଗଲା । ଚଳିତ ବର୍ଷ ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଏହାର ସମ୍ପ୍ରସାରଣ ପାଇଁ ଉଦ୍ୟମ ହେଉଛି ।

ଏକ ପକ୍ଷରେ ନିରକ୍ଷରତା ଦୂରୀକରଣ ପାଇଁ ବ୍ୟାପକ ବ୍ୟବସ୍ଥା କରାଯାଉଛି । ଅନ୍ୟ ପକ୍ଷରେ ଉଚ୍ଚଶିକ୍ଷା କ୍ଷେତ୍ରରେ କ୍ରମ ବର୍ଦ୍ଧମାନ ଜ୍ଞାନପିପାସା ଦୂର କରିବା ପାଇଁ ଉଦ୍ୟମ ହେଉଛି । ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଉଥିଲେ ସୁଦ୍ଧା ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ସ୍ଥାନାଭାବ ଯୋଗୁଁ ଅନେକ ଛାତ୍ରଛାତ୍ରୀ ଯୋଗ୍ୟତାର ସ୍ୱଳ୍ପତା ଯୋଗୁଁ ନିଜର ଆକାଂକ୍ଷା ଅନୁରୂପ ସ୍ଥାନ ପାଇପାରୁ ନାହାନ୍ତି । ଏହି ଅଭାବ ଓ ଅସୁବିଧା ଦୂର କରିବା ପାଇଁ ପତ୍ର ବିନିମୟ ପାଠ୍ୟକ୍ରମ କେତେ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ଆରମ୍ଭ ହୋଇଛି । ଏହା ଫଳରେ ଯେଉଁମାନେ ନିୟମିତ ଛାତ୍ରଛାତ୍ରୀ ନୁହନ୍ତି, ସେମାନେ ମଧ୍ୟ ବିଭିନ୍ନ ବିଷୟରେ ପରୀକ୍ଷା ଦେଇ ଡିଗ୍ରୀ ହାସଲ କରି ପାରୁଛନ୍ତି ।

ସର୍ବଭାରତୀୟ ସ୍ତରରେ ଇନ୍ଦିରା ଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟ ନୂତନ ଜାତୀୟ ଶିକ୍ଷା ନୀତିର ଏକ ଅଙ୍ଗ । ଲୋକେ ଯେପରି ନିଜ ଘରେ ବା କାର୍ଯ୍ୟ କ୍ଷେତ୍ରରେ ଶିକ୍ଷା ପାଇ ପାରିବେ, ରୋଜଗାର କରିବା ସଙ୍ଗେସଙ୍ଗେ ଶିକ୍ଷା ପାଇବେ, ରେଡିଓ, ଟିଭିର ବିଶ୍ୱବିଦ୍ୟାଳୟ ଅନୁଦାନ ପାଠ୍ୟକ୍ରମ ଏବଂ ପତ୍ର ବିନିମୟ ମାଧ୍ୟମରେ ବିଦ୍ୟାର ଦିଗ୍‌ବଳୟକୁ ଅଧିକ ବିସ୍ତୃତ କରିଥିବାରୁ ଗୃହିଣୀ ଓ ମୂଲିଆମାନେ ମଧ୍ୟ ଅଧିକ ଜ୍ଞାନ ଓ ଶିକ୍ଷାଗତ ଯୋଗ୍ୟତା ପାଇ ପାରିବେ ।

ଆଧୁନିକ ଯୁଗରେ ଜନଶିକ୍ଷାର ଏହା କେତୋଟି ଦିଗ । ସ୍ୱାଧୀନତା ପୂର୍ବରୁ ଏପରି ସଂଗଠିତ ଭାବରେ ଅଣଆନୁଷ୍ଠାନିକ ଶିକ୍ଷାର ସୁଯୋଗ ନଥିଲା । ସ୍କୁଲ କଲେଜରେ ନପଢ଼ି ଘରୋଇ ଭାବେ ମେଟ୍ରିକ୍ ବା ବି.ଏ. ପାଶ୍ କରିବା କଷ୍ଟକର ଥିଲା । ଏହାର ପ୍ରଧାନ କାରଣ ହେଲା ଇଂରେଜୀ ଭାଷା ଶିକ୍ଷାଦାନ ଓ ପରୀକ୍ଷାର ମାଧ୍ୟମ ଥିଲା । ଘରୋଇ ପରିବେଶରେ ଇଂରେଜୀ ଭାଷାର ପ୍ରଚଳନ ନଥିବାରୁ ଇଂରେଜୀ ଭାଷାରେ ଲେଖା ଥିବା ଅଧିକାଂଶ ପାଠ୍ୟ ପୁସ୍ତକ ପଢ଼ି ସର୍ବସାଧାରଣ ପରୀକ୍ଷାରେ କୃତକାର୍ଯ୍ୟ ହେବା କଷ୍ଟକର ଥିଲା ।

ଏଥିରୁ ଆମେ କ'ଣ ଧରିନେବା ଯେ ସ୍ୱାଧୀନତା ପୂର୍ବରୁ ଜନଶିକ୍ଷାର ସୁବିଧା ବା ସୁଯୋଗ ନଥିଲା ବା ଲୋକେ ଉଚ୍ଚ ଶିକ୍ଷିତ ବା ପଣ୍ଡିତ ନଥିଲେ ? ନା । ଊନବିଂଶ ଶତାବ୍ଦୀର ଭୀମ ଭୋଇଙ୍କର ଜୀବନ ଚରିତ ଏହାର ଏକ ଉତ୍କୃଷ୍ଟ ଉଦାହରଣ । ସୁଦୂର ମଫସଲ ଅଞ୍ଚଳରେ

ଏକ ଆଦିବାସୀ ପରିବାରରେ ଜନ୍ମଗ୍ରହଣ କରି ସେ କୌଣସି ସାଧାରଣ ବିଦ୍ୟାଳୟରେ ପଢ଼ିବାର ସୁଯୋଗ ନପାଇ ମଧ୍ୟ ଯେପରି ଲଳିତ ଓ ସମୃଦ୍ଧ ଭାଷାରେ ଗୀତି କବିତା ଓ କାବ୍ୟ ରଚନା କରିଛନ୍ତି ଓ ତାଙ୍କର ସାହିତ୍ୟ କୃତିମାନଙ୍କରେ ଯେପରି ମହିମାଧର୍ମ ଦର୍ଶନର ଅଭିବ୍ୟକ୍ତି ପ୍ରକାଶିତ ହୋଇଛି, ତାହା ବାସ୍ତବିକ ତାଙ୍କର ପ୍ରତିଭା ଓ ସାଧନାର ପରିଚୟ ଦିଏ। ଏହି ଗଙ୍ଗାଧର ମେହେର ନିଜର ଆତ୍ମଜୀବନୀରେ ଶିକ୍ଷା ଜୀବନର ସୀମା ନିରୂପଣ କରିଛନ୍ତି। ପରବର୍ତ୍ତୀ ଜୀବନରେ ଅକ୍ଳାନ୍ତ ସାଧନା ବଳରେ ସେ 'ଭକ୍ତି' ଭଳି ଗବେଷଣାତ୍ମକ କବିତା ଓ 'ତପସ୍ୱିନୀ' ଭଳି ଉଚ୍ଚକୋଟିର କାବ୍ୟ ରଚନା କରିଛନ୍ତି। କୌଣସି ଆଧୁନିକ ମହାବିଦ୍ୟାଳୟରେ କିରାଣୀ ହେବାର ଶିକ୍ଷାଗତ ଯୋଗ୍ୟତା ତାଙ୍କର ନଥିଲା। କିନ୍ତୁ ତାଙ୍କର ଓ ଭୀମ ଭୋଇଙ୍କର ସାହିତ୍ୟ କୃତି ଉପରେ ଅନେକ ବିଦ୍ୱାନ୍ ଓ ବିଦୁଷୀ ଗବେଷଣା କରି Ph.D ଓ D.Litt. ଉପାଧି ଲାଭ କରୁଛନ୍ତି ଓ ଭବିଷ୍ୟତରେ ମଧ୍ୟ କରିବେ। ଯୁଗେଯୁଗେ ନୈସର୍ଗିକ ପ୍ରତିଭା ଓ ସାଧନା ସର୍ବୋଚ୍ଚ ଶିକ୍ଷାୟତନର ତୁଙ୍ଗ ଶିଖରକୁ ଟପି ଯାଇଛି। ବିଶ୍ୱକବି ରବୀନ୍ଦ୍ରନାଥ, ମହାନ୍ ଇଂରେଜ କବି ଓ ନାଟ୍ୟକାର ସେକ୍ସପିୟରଙ୍କ ଶିକ୍ଷାଗତ ଯୋଗ୍ୟତା କେତେ ?

ସ୍ୱାଧୀନତା ପୂର୍ବରୁ ଯେଉଁମାନେ ଅକ୍ଷର ଶିକ୍ଷାର ସୁଯୋଗ ମଧ୍ୟ ପାଇ ନଥିଲେ, ସେମାନେ ମଧ୍ୟ ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପୁରାଣ ଶୁଣି ନିଜର ଚରିତ୍ର ଗଠନ କରୁଥିଲେ ଓ ଭାରତୀୟ ସଂସ୍କୃତିକୁ ସୁରକ୍ଷିତ ରଖିଥିଲେ। ମହାତ୍ମା ଗାନ୍ଧୀ ଜଣେ ଉଚ୍ଚକୋଟିର ବିଦ୍ୱାନ ଥିଲେ। କିନ୍ତୁ ସେ ସତ୍ୟ ହରିଶ୍ଚନ୍ଦ୍ର ଓ ଶ୍ରବଣ କୁମାର ଉପାଖ୍ୟାନ ଦ୍ୱାରା ଯେପରି ପ୍ରଭାବିତ ହୋଇଥିଲେ, ଅନ୍ୟ ସମସ୍ତ ପାଠର ପ୍ରଭାବ ହୁଏତ ସେତିକି ତୁଳନୀୟ ନୁହେଁ।

ମୁଁ ପିଲାଦିନେ ସମ୍ବଲପୁରରେ ବୈଷ୍ଣବ ପାଣିଙ୍କର 'ପ୍ରହ୍ଲାଦ ଚରିତ', 'କଂସ ବଧ' ଆଦି ସୁଆଙ୍ଗ ଦେଖିଛି। ବୈଷ୍ଣବ ପାଣି ଉଚ୍ଚ ଶିକ୍ଷିତ ନଥିଲେ, ମାତ୍ର ତାଙ୍କର ଲୋକ ସାହିତ୍ୟରୁ ହଜାର ହଜାର ଲୋକ ଆମର ସଭ୍ୟତା ଓ ସଂସ୍କୃତି ବିଷୟରେ ଶିକ୍ଷାଲାଭ କରୁଛନ୍ତି। ପାଲା, ଦାସକାଠିଆ ଆଦି ଲକ୍ଷ ଲକ୍ଷ ଲୋକଙ୍କର ମନୋରଞ୍ଜନ କରିବା ସଙ୍ଗେସଙ୍ଗେ ଜନଶିକ୍ଷାର ଏକ ଉତ୍କୃଷ୍ଟ ମାଧ୍ୟମ ରୂପେ କାର୍ଯ୍ୟ କରୁଥିଲା। ଭାଗବତ ଟୁଙ୍ଗୀମାନଙ୍କରେ ଭଜନ କୀର୍ତ୍ତନ ସହିତ ସାହିତ୍ୟ ଓ ସମାଜତତ୍ତ୍ୱର ଆଲୋଚନା ହେଉଥିଲା। ଗୋଟିପୁଅ ନାଚ, ଯାତ୍ରା ଉତ୍ସବରେ ସଙ୍ଗୀତ ଆସର ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ସାଲବେଗ ଭଜନ, ଗୋପାଳ କୃଷ୍ଣ ପଦାବଳୀ, ବନମାଳୀଙ୍କ ସଙ୍ଗୀତରେ ମୁଖର ହେଉଥିଲା।

ଆଧୁନିକ ଯୁଗରେ ସ୍ୱାଧୀନତା ଚେତନା ଜାଗ୍ରତ କରାଇବାରେ ଜନଶିକ୍ଷା ସଫଳ ହୋଇଛି। ବଙ୍କିମ ଚନ୍ଦ୍ରଙ୍କର 'ବନ୍ଦେ ମାତରମ୍' ରବୀନ୍ଦ୍ରନାଥଙ୍କର 'ଜନଗଣ ମନ ଅଧିନାୟକ' ଓ 'ଦେଶ ଦେଶ ନନ୍ଦିତ କରି' ଇକବାଲଙ୍କ 'ସାରେ ଜହାଁସେ ଅଚ୍ଛା' ଆଜାଦ୍ ହିନ୍ଦ୍ ଫୌଜର 'କଦମ୍ କଦମ୍ ବଢ଼ାୟେ ଯା' ଓଡ଼ିଶାରେ ଗୋପବନ୍ଧୁ, ଗୋଦାବରୀଶ, ଗଙ୍ଗାଧର, ଲକ୍ଷ୍ମୀକାନ୍ତ, କୃପାନିଧି, ଜାତୀୟ କବି ବୀରକିଶୋର ଆଦିଙ୍କର ଜାତୀୟ କବିତା ଓ ସଙ୍ଗୀତ ଜାତୀୟ ଚେତନାକୁ କିପରି ଉଦ୍‌ବୁଦ୍ଧ କରିଛି, ତାହା ଅବିସ୍ମରଣୀୟ।

(ସୌଜନ୍ୟ—ଆକାଶବାଣୀ ସମ୍ବଲପୁର)






## ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ 'ରାବଣ'ଙ୍କ ସାଫଲ୍ୟ

ବଲାଙ୍ଗୀର ଜିଲ୍ଲାର ବିନିକା ବ୍ଲକ୍ ଅନ୍ତର୍ଗତ 'ସାହାଜ ବାହାଲ' ଗ୍ରାମ ନିବାସୀ ବତିଶ ବର୍ଷ ବୟସ୍କ ଶ୍ରୀ କୃଷ୍ଣଚନ୍ଦ୍ର ରାବଣ ଏକ ଗରିବ ଯୁବକ । ଜାତିରେ ସଁଥିଆ । ନିଜର ଜମିବାଡି କହିଲେ ବିଶେଷ କିଛି ନାହିଁ । ଯାହା ଅଛି ସେଥିରୁ ବାର୍ଷିକ ଆୟ ଦୁଇ ହଜାରରୁ ତିନି ହଜାର ଭିତରେ । ଏହି ସ୍ୱଳ୍ପ ଆୟରେ ବର୍ତ୍ତମାନର ମହଙ୍ଗା ବଜାରରେ ନିଜର 10 ଜଣ ପ୍ରାଣ ବିଶିଷ୍ଟ ପରିବାରକୁ ଚଳାଇବା ନିହାତି ଅସମ୍ଭବ । ତାଙ୍କର ପରିବାର କହିଲେ ବୃଦ୍ଧ ପିତାମାତା, ନିଜେ ସ୍ୱାମୀ, ସ୍ତ୍ରୀ ଓ ତାଙ୍କର ଛଅଟି ପିଲା । ପିତା ଶ୍ରୀ ନେତ୍ର ରାବଣଙ୍କର ବୟସ ୬୦ ବର୍ଷ ହେବ । ଏଣୁ ନିଜ ଉପରେ ନିର୍ଭର କରୁଥିବା ଏହି ଦଶଜଣିଆ ପରିବାରଟି ତା'ଉପରେ ଏକ ବୋଝ ପରି ମନେ ହୁଏ । ପରିବାରଟିକୁ ଆବଶ୍ୟକୀୟ ଗଣ୍ଡାଏ ଖାଇବାକୁ ଦେବା ତା'ପକ୍ଷରେ ବଡ କଷ୍ଟ । ପିଲାମାନଙ୍କୁ ଶିକ୍ଷା ଦେବା ତ ଦୂରର କଥା ।

ସେ ଯାହା ହେଉ କୃଷ୍ଣ ରାବଣ ଜଣେ ଉଦ୍ୟମୀ ଓ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି । ଏହି ଦାରିଦ୍ର୍ୟ କଶାଘାତରୁ ମୁକ୍ତି ପାଇବା ପାଇଁ ସର୍ବଦା ଉପାୟ ଖୋଜୁଥାନ୍ତି । ସବୁଦିନ ସମାନ ଯାଏ ନାହିଁ । ସୁଖ ପରେ ଦୁଃଖ ଓ ଦୁଃଖ ପରେ ସୁଖ ଏ ସଂସାରର ଚିରନ୍ତନ ପନ୍ଥା । ସେ ମନେ ମନେ ଚିନ୍ତା କରୁଥାନ୍ତି ଯେ ଯଦି କିଛି ଋଣ ସରକାରଙ୍କ ତରଫରୁ ଆଣି ପାରନ୍ତେ ତେବେ ଗୋଟିଏ ଦେହରାତି ଦୋକାନ (କିରାନା) ଗାଁରେ କରି ନିଜର ଆର୍ଥିକ ଅବସ୍ଥା ଦୂର କରି ପାରନ୍ତେ । ଇଚ୍ଛାଥିଲେ ଉପାୟ ନିଶ୍ଚୟ ଆସିବ । ତାଙ୍କର ଆଶା ପୂରଣ ହେଲା ।

1987–88 ଆର୍ଥିକ ବର୍ଷଟି ଥିଲା କୃଷ୍ଣ ରାବଣଙ୍କ ଆର୍ଥିକ ପରିସ୍ଥିତି ସୁଧାରିବାର ଏକ ମାଇଲ୍ ଖୁଣ୍ଟ ସଦୃଶ । ସେ ତାହାର ମନର କଥା ବିନିକା ବ୍ଲକ୍ର ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଆଗରେ ପ୍ରକାଶ କରିବାରୁ ବି.ଡି.ଓ. ମହାଶୟ ତାହାର ଆଗ୍ରହ ଦେଖି ତାକୁ ଆଇ.ଆର୍.ଡି.ପି. ଯୋଜନାରେ ଋଣ ପ୍ରଦାନ କରିବାକୁ ବଲାଙ୍ଗୀର ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ, ବିନିକା ଶାଖାକୁ ସୁପାରିଶ କରିଦେଲେ । ଫଳରେ ସେ 1988 ମସିହା ଫେବ୍ରୁଆରୀ ମାସ 26 ତାରିଖରେ ବିନିକା ଶାଖାରୁ ସମୁଦାୟ 4,000 ଟଙ୍କା ଋଣ ପାଇଲେ ଓ 874 ଟଙ୍କାର ଏକ ସାଇକେଲ୍ ପାଇଲେ । ସେଥିରୁ ସବ୍ସିଡି ଆକାରରେ 2,437 ଟଙ୍କା ଛାଡ ପାଇଲେ । ଏହି ଟଙ୍କାରେ ସେ ଗ୍ରାମରେ ଏକ କିରାନା ଦୋକାନ ଖୋଲିଲେ ଓ ମିଳିଥିବା ସାଇକେଲ୍‌ରେ ଦୋକାନ ପାଇଁ ଆବଶ୍ୟକୀୟ ଜିନିଷମାନ ରାମପୁର ପ୍ରଭୃତି ସ୍ଥାନରୁ କିଣିଆଣି ବ୍ୟବସାୟ ଆରମ୍ଭ କଲେ । ଗ୍ରାମରେ ବି ଏପରି ଦୋକାନ ନ ଥିଲା । ଫଳରେ ନିଜ ଦୋକାନଟି ଖୁବ୍ ଭଲ ଚାଲିଲା । ରାବଣଙ୍କର ବେଶ୍ ଦୁଇ ପଇସା ରୋଜଗାର ହେଲା । ପୂର୍ବାବସ୍ଥା ତାଙ୍କର ଅଳ୍ପେ ଅଳ୍ପେ ବଦଳିବାକୁ ଲାଗିଲା । ପୂର୍ବର ସେ ଦାରିଦ୍ର୍ୟର କଶାଘାତ ଦୂରେଇ ଗଲା । ହେଲେ ଋଣ ଫେରସ୍ତ କଥା ଭୁଲି ନ ଥାନ୍ତି । ଋଣ ଶୁଝିବା ପାଇଁ ସେ ଦୃଢ ପ୍ରତିଜ୍ଞ । ଏଣୁ ସେ ନିୟମିତ ଭାବରେ ପ୍ରତି ମାସରେ ଋଣ ଶୁଝି ଶୁଝି ଚାଲିଥାନ୍ତି । ବର୍ତ୍ତମାନ ତାଙ୍କୁ ଆଉ ମାତ୍ର 264 ଟଙ୍କା 70 ପଇସା ଋଣ ଶୁଝିବାକୁ ଅଛି । ଏହାକୁ ଆସନ୍ତା ମାସରେ ଶୁଝି ଦେବା ପାଇଁ ସେ ପ୍ରତିଜ୍ଞାବଦ୍ଧ । ଏହା ଭିତରେ ସେ ନିଜର ଗୋଟିଏ ସ୍ଥାୟୀ ଦୋକାନ ଘର ତିଆରି କରି ପାରିଛନ୍ତି । ନିଜର ଘରର ନଡା ଛପରକୁ ପରିବର୍ତ୍ତନ କରି ଖପର ଘର କରିଛନ୍ତି । ନିଜର ପିଲାମାନଙ୍କୁ ଖାଦ୍ୟ ବସ୍ତ୍ର ତଥା ବହିପତ୍ର ଯୋଗାଇ ପାରୁଛନ୍ତି । ବୃଦ୍ଧ ପିତାମାତାଙ୍କୁ ସୁଖରେ ରଖି ପାରିଛନ୍ତି । ବର୍ତ୍ତମାନ ତାଙ୍କର ପରିବାରଟି ଏକ ସୁଖର ସଂସାରରେ ପରିଣତ ହୋଇପାରିଛି ।

ବାସ୍ତବିକ ସରକାରଙ୍କର ପ୍ରଚଳିତ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ଯୋଗୁଁ ହିଁ ଶ୍ରୀକୃଷ୍ଣ ରାବଣଙ୍କର ଏହି ସାଫଲ୍ୟ । ଏଣୁ ସେ ସରକାରଙ୍କ ପାଖରେ ଋଣୀ ।

ଶ୍ରୀ ଖଗେଶ୍ୱର ରାଉତ,

# ଗୌରାଙ୍ଗର ଆନନ୍ଦ

ଢେଙ୍କାନାଳ ଜିଲ୍ଲା କାମାକ୍ଷାନଗର ବ୍ଲକ୍ ଅନ୍ତର୍ଗତ ଗୁଣ୍ଡିଚାମାଳି ଗାଁରେ ଗୌରାଙ୍ଗ ଡାକୁଆଙ୍କର ଘର । ସ୍ୱାମୀ, ସ୍ତ୍ରୀ ଓ ୧୫ ବର୍ଷର ପୁଅଟିକୁ ନେଇ ଛୋଟ ସଂସାର । ଡିପ ପଦର ଜମିକୁ ବାଦ ଦେଲେ ଚାଷ ଜମି ଆଠ, ଦଶ ଗୁଣ୍ଠ ହେବ । ସେଥିରେ ପୁଣି ବ୍ରାହ୍ମଣୀ ନଦୀର ବଢ଼ି ପୋଖୁଁ ପ୍ରତିବର୍ଷ ନ ହେଲେ ବି ବର୍ଷେ ବର୍ଷେ ଫସଲ ନଷ୍ଟ ହୋଇଯାଏ । ବିଚରା ଗୌରାଙ୍ଗ ପରର ମୂଲପାଟି ଲାଗି ଓ ଅନ୍ୟ ଲୋକମାନଙ୍କର ଜମି ଭାଗକୁ ଚାଷ କରି ଦୁଃଖ କଷ୍ଟରେ ପରିବାର ଚଳାଏ । ଅଭାବରୁ ପୁଅକୁ ପାଠ ପଢ଼ାଇବା ତା' ପକ୍ଷେ ସମ୍ଭବ ହୁଏ ନାହିଁ ।

ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ଗରିବ ଲୋକମାନଙ୍କର ଥଇଥାନ ଯୋଜନାରେ (ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା) ଗୌରାଙ୍ଗର ନାମକୁ କାମାକ୍ଷାନଗର ବି.ଡି.ଓ. ସୁପାରିଶ କଲେ । ୧୯୮୫-୮୬ ଆର୍ଥିକ ବର୍ଷରେ ଡେଜରାତି ଦୋକାନ ପାଇଁ ଗୌରାଙ୍ଗଙ୍କୁ କାମାକ୍ଷାନଗର ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ ୩,୦୦୦ ଟଙ୍କା ଋଣ ମିଳିଲା । ସେହି ଟଙ୍କାରେ ଗୌରାଙ୍ଗ ଗାଁରେ ଗୋଟିଏ ଡେଜରାତି ଦୋକାନ ଖୋଲିଲା । ଦିନକୁ ଦିନ ଦୋକାନରେ ବିକ୍ରି ଭଲ ହେଲା । ଦୋକାନ ଆଦାୟରୁ ଖାଇବା ଖର୍ଚ୍ଚ ଓ ଘର ଖର୍ଚ୍ଚରେ ନ ଲଗାଇଲେ ଦୋକାନ ଭଲ ଚାଲିବ ନାହିଁ ଭାବି ପ୍ରଥମ ବର୍ଷ ସେ ପୁଅକୁ ଦୋକାନ ଦାୟିତ୍ୱ ଦେଇ ପୂର୍ବ ପରି ମୂଲପାଟି ଲାଗି ଓ ଅନ୍ୟର ଜମି ଭାଗରେ ଚଷି ଘର ଚଳାଇଲା । ଏସବୁ ସତ୍ତ୍ୱେ ଦୋକାନ ପାଇଁ ଯାହା ଜିନିଷ ଆବଶ୍ୟକ ତାହା ଠିକ୍ ସମୟରେ ଯୋଗାଉ ଥାଏ । ଦିନକୁ ଦିନ ଦୋକାନ ବଢ଼ିବାକୁ ଲାଗିଲା । ଗୌରାଙ୍ଗ ଡେଜରାତି ଦୋକାନ ସାଙ୍ଗକୁ ବିଭିନ୍ନ ପନିପରିବା ମଧ୍ୟ ଦୋକାନରେ ବିକ୍ରି କଲା । ଗୌରାଙ୍ଗର ପୁଅ ପାଠ ନ ପଢ଼ି ଏଣେ ତେଣେ ବୁଲୁଥିଲା ସତ୍ୟ କିନ୍ତୁ ଦୋକାନ ଦେଲା ପରେ ସେ ବାପାକୁ ସାହାଯ୍ୟ କଲା । ସେ ଆଣିଥିବା ଋଣ ପ୍ରାୟ ୧ ବର୍ଷ ହେବ ପରିଶୋଧ କରି ସାରିଲେଣି । ଆଗଭଳି ଗୌରାଙ୍ଗ ଆଉ ପରର ମୂଲପାଟି ଲାଗିବାକୁ ଯାଉ ନାହାନ୍ତି କି ଅନ୍ୟମାନଙ୍କର ଜମି ଭାଗରେ ଚାଷ କରୁ ନାହାନ୍ତି ।

ଗୌରାଙ୍ଗ ଡାକୁଆ ବର୍ତ୍ତମାନ ନିଜକୁ ଆଉ ନିଃସ୍ୱ, ଅସହାୟ ମନେ କରୁ ନାହାନ୍ତି । ନିଜର ଜମିତକ ଚାଷ କରିବା ସଙ୍ଗେସଙ୍ଗେ ଗାଁ ଲୋକଙ୍କର ଚାହିଦା ମୁତାବକ ଜିନିଷ ଦୋକାନରେ ରଖି ବେଶ୍ ଦି ପଇସା ରୋଜଗାର କରୁଛନ୍ତି । ସେ ଭଲରେ ଚଳିବା ସଙ୍ଗେସଙ୍ଗେ ତିନି ଗୁଣ୍ଠ ଜମି କିଣିଛନ୍ତି । ଦୋକାନ ବଢ଼ାଇବା ପାଇଁ ଏସ୍. ବି. ଆଇ. କାମାକ୍ଷାନଗରକୁ ଋଣ ପାଇଁ ଦରଖାସ୍ତ କରିଛନ୍ତି । ସେ କହନ୍ତି ସରକାରଙ୍କର ଋଣ ପାଇଁ ମୋର ସଂସାର ହସି ଉଠିଛି । ଆଜି ମୋର ଆନନ୍ଦ କହିଲେ ନ ସରେ ।

ଶ୍ରୀ କରୁଣାକର ବିଶ୍ୱାଳ

# ମୁରଲିର ଡେଜରାତି ଦୋକାନ

ଢେଙ୍କାନାଳ ଜିଲ୍ଲାର କାମାକ୍ଷାନଗର ବ୍ଲକ୍ ଅନ୍ତର୍ଗତ ଇନ୍ଦ୍ରାବତୀପୁର ଗାଁର ମୁରଲିଧର ସେଠୀ । ଜାତିରେ ହରିଜନ । ବାପା, ମା, ଭାଇ, ସ୍ତ୍ରୀ ଓ ପୁଅ ଝିଅଙ୍କୁ ମିଶାଇ ୧୨ ଜଣ ପରିବାର । ପୈତୃକ ସମ୍ପତ୍ତି ବାଡ଼ି ଗୋବରରେ ଗୋବେ ନାହିଁ । ଭୂମି ହୀନ ଓ ଘରଡିହ ହୀନ ହୋଇ ଥିବାରୁ ସରକାରଙ୍କ ତରଫରୁ ୨ ଡେସିମିଲ ଘରଡିହ ମୁରଲିର ବାପାଙ୍କୁ ପଟ୍ଟା ଦିଆ ଯାଇଥିଲା । ବାପା, ସାନ ଦୁଇ ଭାଇ ଓ ନିଜେ ମୁରଲି ମୂଲପାଟି ଲାଗି ଓ ଗାଁ ଲୋକମାନଙ୍କର ଜମି ଭାଗରେ ଚାଷ କରି ବଡ଼ କଷ୍ଟରେ ଭରଣ ପୋଷଣ କରୁଥିଲେ । କୁଟୁମ୍ବଙ୍କର ସମସ୍ତ ଚଳାଚଳ ଦାୟିତ୍ୱ ମୁରଲି ଉପରେ । ସେହି ଗାଁରେ ଡେଜରାତି ଦୋକାନ ଆଗରୁ ନ ଥିଲା । ଲୋକମାନେ ପାଖ ଗାଁରୁ ଆବଶ୍ୟକୀୟ ଜିନିଷ ଆଣୁଥିଲେ । ମୁରଲି ଚିନ୍ତାକଲା ଗାଁରେ ଗୋଟିଏ ଡେଜରାତି ଦୋକାନ ଦେଲେ ବିକ୍ରି ଭଲ ହୁଅନ୍ତା । ସମ୍ବଳ ଅଭାବରୁ ମହାଜନଠାରୁ ଟଙ୍କା ଆଣି ଦୋକାନ ଦେଲା କିନ୍ତୁ ଅଭାବ ହେତୁ ଦୋକାନ ଉଧାଇ ପାରିଲା ନାହିଁ । ଯାହା ବିକ୍ରି ହେଲା ସେହି ଟଙ୍କାରୁ ଖାଇବା ଖର୍ଚ୍ଚ ଓ ଘର ଖର୍ଚ୍ଚ ତୁଲାଇ ଦୋକାନ ପାଇଁ ଜିନିଷ ଆଣି ହେଲା ନାହିଁ । ସେ ଶୁଣିଲା ସରକାର ଗରିବମାନଙ୍କର ଥଇଥାନ ପାଇଁ ବିଭିନ୍ନ ଯୋଜନା ମାଧ୍ୟମରେ ଋଣ ଦେଉ ଅଛନ୍ତି । ସେ ଋଣ ପାଇଁ ଆବେଦନ କଲା ଓ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାରେ ତାଙ୍କୁ ଅନ୍ତର୍ଭୁକ୍ତ କରାଗଲା । ୟୁନିଅନ୍ ବ୍ୟାଙ୍କ୍, ଯୋଗର ଶାଖାରୁ ତାଙ୍କୁ ୧୯୮୫-୮୬ ଆର୍ଥିକ ବର୍ଷରେ ଡେଜରାତି ଦୋକାନ ପାଇଁ ୨,୦୦୦ ଟଙ୍କା ଋଣ ମିଳିଲା । ଋଣ ପାଇଁ ମୁରଲି ତା'ର ପୁରୁଣା ଦୋକାନ ପାଇଁ ଲୋକମାନଙ୍କର ଚାହିଦା ମୁତାବକ ଜିନିଷ ଆଣି ସଜାଇଲା ଓ ତା'ର ପୂର୍ବ ପରିକଳ୍ପନା ସଫଳ ହୋଇଥିବାରୁ ଭାରି ଖୁସି ହେଲା । ଦିନକୁ ଦିନ ଦୋକାନ ବଢ଼ିବାରେ ଲାଗିଲା । ଲୋକମାନଙ୍କର ଚାହିଦା ମୁତାବକ ଜିନିଷ ଦୋକାନରେ ମିଳିବାରୁ ଭଲ ବିକ୍ରି ହେଲା । ମୁରଲି କିନ୍ତୁ ଋଣ ପରିଶୋଧ କରିବାରେ ଖିଲାପ କରୁ ନ ଥାଏ । ମୁରଲି କିନ୍ତୁ ଋଣ ମିଳିବାରେ ସମୟ ହୋଇ ନାହିଁ । ତଥାପି ଦ୍ୱିତୀୟ କିସ୍ତି ଋଣ ମିଳିବାରେ ସମୟ ହୋଇ ନାହିଁ । ତଥାପି ମୁରଲି ଋଣ ଶୁଝି ଦେବାରୁ ଓ ତା'ର ସଚ୍ଚୋଟ ପଣିଆ ଦେଖି ୟୁନିୟନ୍ ବ୍ୟାଙ୍କ୍, ଯୋଗର ତାଙ୍କୁ ୫,୦୦୦ ଟଙ୍କା ବ୍ୟାଙ୍କ ଋଣ ଦେଇଛନ୍ତି । ସେହି ଟଙ୍କାରେ ସେ ଦୋକାନର ସମସ୍ତ ଜିନିଷ ଆଣି ଭଲରେ ସଜାଇଛି । ଆଖପାଖ ଲୋକମାନଙ୍କର ମୁରଲି ଦୋକାନରେ ଭିଡ଼ । ଦୋକାନଟିକୁ ଦେଖିଲେ ଖୁସି ଲାଗିବ । ଶ୍ରୀ ମୁରଲିଧର ସେଠୀ କହନ୍ତି, ସରକାରଙ୍କର ଋଣ ଟଙ୍କା ଆଣି ଦୋକାନରେ ଲଗାଇ ମୁଁ ଗୋଟିଏ ଏକର ଜମି କିଣିଛି । ସାନ ଭାଇ ଦୁଇ ଜଣଙ୍କୁ ବାହା କରାଇଛି । ମୋର ଦୁଇ ପୁଅଙ୍କୁ ପାଠ ପଢ଼ାଇବାରେ ସକ୍ଷମ ହୋଇଛି । ବଳଦ ହଳେ କିଣି ଆମ ନିଜ ଜମି ଚାଷ କରିବା ସଙ୍ଗେସଙ୍ଗେ ଗାଁ ଲୋକମାନଙ୍କର ଜମି ଭାଗକୁ ଚାଷ କରି କିଛି ଧାନ ପାଉଛି । ସମୟ ଥିଲା ଆମେ ଦୁଇ ବେଳା ପେଟ ପୂରାଇ ଖାଇବାକୁ ପାଉ ନ ଥିଲୁ । ବର୍ତ୍ତମାନ ଆମେ ଆମର ଆବଶ୍ୟକୀୟ ଖାଦ୍ୟ, ଲୁଗା ପଟା ଓ ପିଲାମାନଙ୍କୁ

ପୋଷାକ ଯୋଗାଇ ଦେବାରେ ଅସୁବିଧା ହେଉ ନାହିଁ । ଆମ୍ଭେ ଭଲରେ ଚଳୁଛୁ । ମୁରଲିର ମା' କୁହନ୍ତି ଋଣ ଆମର ଭାଗ୍ୟ ବଦଳାଇ ଦେଇଛି । ଆମେ ଭଲରେ ଅଛୁ ।

ଶ୍ରୀ କରୁଣାକର ବିଶ୍ୱାଳ,

## ଲୁଣିପାଣି ଚିଙ୍ଗୁଡ଼ି ଚାଷରେ କାଳୁ ଜେନାଙ୍କ ଭାଗ୍ୟୋଦୟ

ପୁରୀ ଜିଲ୍ଲା ବ୍ରହ୍ମଗିରି ବ୍ଲକ୍ 'ମାଟଳାପୁର' ଗ୍ରାମର ଶ୍ରୀ କାଳୁ ଚରଣ ଜେନା ଏକ ଛୋଟଚାଷୀ । ଜମି ମାତ୍ର ୪ ଏକରରେ ପୁଅ, ଝିଅ, ନାତି, ନାତୁଣୀ ମିଶି ମୋଟ ୨୦ ଜଣ ପରିବାର ବହୁ କଷ୍ଟରେ ପୋଷି ହୁଅନ୍ତି ।

ଶ୍ରୀ ଜେନା ନିଜର ଆର୍ଥିକ ଉନ୍ନତି କରିବା ନିମନ୍ତେ ଚିଙ୍ଗୁଡ଼ି ଚାଷ କରିବା ପାଇଁ ସଙ୍କଳ୍ପ ନେଲେ । ପୁରୀଠାରେ ଅବସ୍ଥିତ ଲୁଣିପାଣିରେ ଚିଙ୍ଗୁଡ଼ି ଚାଷ ଉନ୍ନୟନ ସଂସ୍ଥାର ମୁଖ୍ୟ ନିର୍ବାହୀ ଅଧିକାରୀଙ୍କ ସହିତ ସାକ୍ଷାତ କରି ଏ ଦିଗରେ ସାହାଯ୍ୟ ଭିକ୍ଷା କରିଥିଲେ । ମୁଖ୍ୟ ନିର୍ବାହୀ ଅଧିକାରୀ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିବା ପାଇଁ ତାଙ୍କୁ ଉତ୍ସାହିତ କରିଥିବାରୁ ଶ୍ରୀ ଜେନାଙ୍କର ମନ ପ୍ରଫୁଲ୍ଲିତ ହୋଇ ଉଠିଲା । କାରଣ ଚିଙ୍ଗୁଡ଼ି ଚାଷ ପାଇଁ ବନ୍ଧ ଖୋଳିବା ପାଇଁ ୨୦ ହଜାର ଟଙ୍କା ଦରକାର ହେବ । ଏକକାଳୀନ କୋଡ଼ିଏ ଶହ ଟଙ୍କା ତାଂପାଖରେ ମିଳିବ ନାହିଁ ସେ କୋଡ଼ିଏ ହଜାର ଟଙ୍କା ଆଣିବ କୁଆଡୁ ।

ଶ୍ରୀ ଜେନାଙ୍କ ଗ୍ରାମକୁ ଚିଙ୍ଗୁଡ଼ି ଉନ୍ନୟନ ସଂସ୍ଥାର କ୍ଷେତ୍ର ଅଧିକାରୀମାନେ ଯାଇଥିଲେ ଏବଂ ତାଙ୍କର ଜମିର ଅବସ୍ଥିତି ଦେଖି ଜମିର ମାଟି ପରୀକ୍ଷାରେ ଉକ୍ତ ଜମି ଚିଙ୍ଗୁଡ଼ି ଚାଷ ପାଇଁ ଉପଯୁକ୍ତ ବିବେଚିତ ହୋଇଥିଲା । ଫଳରେ ଉକ୍ତ ଚିଙ୍ଗୁଡ଼ି ଉନ୍ନୟନ ସଂସ୍ଥା (BFDA) ଶ୍ରୀ ଜେନାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିଥିଲେ । ଲୁଣିପାଣିରେ ଚିଙ୍ଗୁଡ଼ି ଚାଷ ଉନ୍ନୟନ ସଂସ୍ଥା (BFDA)ର ସୁପାରିଶ କ୍ରମେ ପୁରୀ ଜିଲ୍ଲା ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ମୁଖ୍ୟ ଶାଖାରୁ ମୋଟ ୧୯,୮୦୩ ଟଙ୍କା, ୧୯୮୭ ମସିହା ମେ ମାସରେ ମଞ୍ଜୁର ହୋଇଥିଲା । ଉକ୍ତ ଚାଷ ପାଇଁ ଶତକଡ଼ା ୨୫ ଭାଗ ସବ୍‌ସିଡ଼ି ଚିଙ୍ଗୁଡ଼ି ଉନ୍ନୟନ ସଂସ୍ଥା ଦେଇଥିଲେ । ଜୁଲାଇ ମାସରେ ଶତକଡ଼ା ୧୦ ଭାଗ ଅଗ୍ରୀମ ସବ୍‌ସିଡ଼ି ଟ୧,୯୮୦.୩୦ପ. ଏବଂ ଅବଶିଷ୍ଟ ସବ୍‌ସିଡ଼ି ଟ୨,୯୭୦.୪୫ପ. ଅଗଷ୍ଟ ମାସରେ ଦିଆଯାଇଥିଲା । ସବ୍‌ସିଡ଼ି ଦିବା ପରେ ଅବଶିଷ୍ଟ ଟ୧୪,୮୫୨.୨୫ପ. ଶ୍ରୀ ଜେନା ଚିଙ୍ଗୁଡ଼ି ଚାଷରୁ ଲବ୍ଧ ଲାଭାଂଶ ଟଙ୍କାରୁ ୬ ବର୍ଷରେ ଶୁଝିବା କଥା, କିନ୍ତୁ ଚିଙ୍ଗୁଡ଼ି ଚାଷ ଦ୍ୱାରା ଅଧିକ ଲାଭ ହେଉଥିବାରୁ ୫ ବର୍ଷରେ ଉକ୍ତ ଟଙ୍କା ଶୁଝିବା ପାଇଁ ସ୍ଥିର କରିଛନ୍ତି ।

ଶ୍ରୀ ଜେନା ତାଙ୍କର ୨ ଏକର ୩୩ ଡେସିମିଲ ଯାଗାରେ ଚିଙ୍ଗୁଡ଼ି ଚାଷ ଆରମ୍ଭ କଲେ । ଏକ ଏକର ଜଳାଧାର ବିଶିଷ୍ଟ ପୋଖରୀ ଦୁଇଗୋଟି ଖନନ କରିଥିଲେ ।

ଚିଙ୍ଗୁଡ଼ି ଚାଷ ନିମିତ୍ତ ଏକ ଏକର ଜଳାଧାର ବିଶିଷ୍ଟ ପୋଖରୀ ପାଇଁ ପଥର ଚୂନ ୮୦ କି.ଗ୍ରା., କମ୍ପୋଷ୍ଟ ଗୋବର ୨,୦୦୦ କି.ଗ୍ରା., ୟୁରିଆ ସାର ୫୦ କି.ଗ୍ରା., ସୁପର୍ ଫସ୍ଫେଟ୍ ସାର ୫୦ କି.ଗ୍ରା., ଶୁଖୁଆଗୁଣ୍ଡ (ଫିସମିଲ୍) ଓ ବାଦାମ ପିଡ଼ିଆ ୨୩୩ କି.ଗ୍ରା. ଚିଙ୍ଗୁଡ଼ି ଜାଆଁଳ 11/2–2 (ପ୍ୟାକିଂ ଖର୍ଚ୍ଚ ସହ) ୮,୦୦୦ କି.ଗ୍ରା. ଗେଣ୍ଡା/ଶାମୁକା ମାଂସ ୧୮୭.୫୦୦ କି.ଗ୍ରା. ଦରକାର ହୋଇଥାଏ । ଏ ସମସ୍ତ ପଥର ଚୂନଠାରୁ ଗେଣ୍ଡା ଶାମୁକା ମାଂସ ପ୍ରତ୍ୟେକ ଖର୍ଚ୍ଚ ୨୮୫ ଟଙ୍କା ଲାଗିଥିଲା । ତା ବ୍ୟତୀତ ଧଉଡ଼ି ଜାଲ, ଡାଲେଭା ଓ ଚିଙ୍ଗୁଡ଼ି ଧରା ପାଇଁ ୬୫ ଟଙ୍କା ଦରକାର ହୁଏ ଏବଂ ବୀମା ପ୍ରିମିୟମ୍ ୨୨୫ ଟଙ୍କା ପଡ଼ିଥିଲା । ଚିଙ୍ଗୁଡ଼ି ଚାଷ ପାଇଁ ହେଉଥିବା ପୋଖରୀ ଗଭୀର ମାତ୍ର ୩ ଫୁଟ ।

ଚିଙ୍ଗୁଡ଼ି ଚାଷ ଆରମ୍ଭ ହେବା ଦିନଠାରୁ ମାଛମରା ହେବା ପର୍ଯ୍ୟନ୍ତ ଚିଙ୍ଗୁଡ଼ି ଉନ୍ନୟନ ସଂସ୍ଥା କର୍ମଚାରୀମାନେ ପ୍ରତି ମାସରେ ବନ୍ଧର ପାଣି ପରୀକ୍ଷା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଅସୁବିଧା ଦୂର କରିବା ନିମିତ୍ତ ଶ୍ରୀ ଜେନାଙ୍କୁ ପରାମର୍ଶ ଦେଇଥିଲେ । ଫଳରେ ତାଙ୍କର ଚିଙ୍ଗୁଡ଼ି ଚାଷ ଫଳପ୍ରଦ ହୋଇ ପାରିଥିଲା ।

ସେ ବର୍ଷକୁ ଦୁଇଟି ଚିଙ୍ଗୁଡ଼ି ଫସଲ କରି ପାରିଥିଲେ । ଚିଙ୍ଗୁଡ଼ି ଜାଆଁଳ ଛାଡ଼ିବା ଦିନଠାରୁ ୩/୪ ମାସ ମଧ୍ୟରେ ଚିଙ୍ଗୁଡ଼ି ଧରାଯାଏ । ଦୁଇଗୋଟି ପୋଖରୀରୁ ସେ ପ୍ରଥମ ବର୍ଷ ପ୍ରଥମଥର ୨୦୦ କିଲୋଗ୍ରାମ୍ ଚିଙ୍ଗୁଡ଼ି ବିକ୍ରି କରିଥିଲେ । ଅତିବେଶି ମୁଣ୍ଡଥିବା ଚିଙ୍ଗୁଡ଼ି କିଲୋଗ୍ରାମ୍ ପିଛା ୭୦ ଟଙ୍କାରୁ ୧୯୦ ଟଙ୍କା ଦରରେ ବିକ୍ରି ହୁଏ । କିନ୍ତୁ ସେ କିଲୋଗ୍ରାମ୍ ପିଛା ୯୦ ଟଙ୍କା ଦରରେ ପାଖରେ ଥିବା ରୋଡଙ୍ଗ ପଞ୍ଚାୟତ ଅନ୍ତର୍ଗତ ଗୋଖରାଠାରେ ଥିବା ଚିଙ୍ଗୁଡ଼ି ପ୍ୟାକିଂ ଉତ୍କଳ ମେରାଇନ୍‌ଙ୍କୁ ବିକ୍ରି କରିଥିଲେ । ସେ ପ୍ରଥମ ଥର ୧୮ ହଜାର ଟଙ୍କା ବିକ୍ରି କରିଥିଲେ । ୨ ବର୍ଷରେ ସେ ୫୪ ହଜାର ଟଙ୍କା ପାଇଥିଲେ ।

ସବ୍‌ସିଡ଼ି ଯାଇ ୬ ବର୍ଷରେ ଶୁଝିବାକୁ ଥିବା ୧୪,୮୫୨ ଟଙ୍କାକୁ ଶ୍ରୀ ଜେନା ଚାହିଁଥିଲେ ଗୋଟିଏ ବର୍ଷରେ ଶୁଝି ପାରିଥାନ୍ତେ କିନ୍ତୁ ବର୍ତ୍ତମାନ ସେ ୧୦ ହଜାର ଟଙ୍କା ବ୍ୟାଙ୍କ୍ ପରିଶୋଧ କରିପାରିଛନ୍ତି । ୧୫ ହଜାର ଟଙ୍କା ମୂଲ୍ୟର ୩ ଏକର ଜମି କ୍ରୟ କରିପାରି ଅଛନ୍ତି । ଝିଅର ବିଭାଘର ସମାପନ କରିବା ସଙ୍ଗେସଙ୍ଗେ ପିଲାମାନଙ୍କ ପଢ଼ାପଢ଼ି ଏବଂ ଘରର ଯାବତୀୟ ଖର୍ଚ୍ଚ କରି ବହୁ ସୁବିଧାରେ ପରିବାର ପ୍ରତିପୋଷଣ କରିପାରୁଛନ୍ତି । ଉକ୍ତ ଗ୍ରାମର ୪୦ ପରିବାରଙ୍କ ମଧ୍ୟରୁ ୨/୩ଟି ପରିବାର ଛାଡ଼ି ଦେଲେ ପ୍ରାୟ ସମସ୍ତ ପରିବାର ଚିଙ୍ଗୁଡ଼ି ଚାଷ କରି ନିଜ ନିଜର ଆର୍ଥିକ ମାନଦଣ୍ଡ ଉନ୍ନତ କରି ପାରିଅଛନ୍ତି ।

ଶ୍ରୀ ବିଧୁଭୂଷଣ ମାନସିଂହ

## ଲଳିତାର ବ୍ୟବସାୟ

ବଲାଙ୍ଗୀର ଜିଲ୍ଲା ଅନ୍ତର୍ଗତ ଦେଓଗାଁ ପଞ୍ଚାୟତ ସମିତିର 'ଗେଏଲପିଟା' ଏକ ଆଦିବାସୀ ଅଧ୍ୟୁଷିତ କ୍ଷୁଦ୍ର ଗ୍ରାମ । ଗ୍ରାମଟି ବଲାଙ୍ଗୀରଠାରୁ ୫୦ କି.ମି. ଦୂରରେ ଅବସ୍ଥିତ । ଏହି ଗାଁରେ ଗଣ୍ଡ ଆଦିବାସୀଙ୍କ ବସତି । ଉକ୍ତ ଗ୍ରାମରେ ୩୫ ବର୍ଷ ବୟସ୍କା ବିଧବା ଲଳିତା ଧରୁଆ ବାସ କରନ୍ତି । ସ୍ୱାମୀ ସ୍ୱର୍ଗତଃ ମୋହନ ଧରୁଆ ପରଲୋକରେ । ପାଖରେ ତାଙ୍କର ୮ ବର୍ଷର ଝିଅ ଏବଂ ୧୪ ବର୍ଷର ପୁଅ କପିଳେଶ୍ୱର ଧରୁଆ । କେବଳ ୨ ଏକର ଡିପ ଜମି ଅଛି । ସେଥିରେ କି ବର୍ଷା ଅଭାବରୁ ପ୍ରାୟ ଫସଲ ହୁଏ ନାହିଁ । ଲଗାତର ମରୁଡି ଫଳରେ ଜମିରୁ କିଛି ଉତ୍ପାଦନ ପ୍ରାୟ ହେଉନଥିବା ସେ କହନ୍ତି । ନିଜର ଖଣ୍ଡିଏ ଘର ଅଛି । କଷ୍ଟେମଷ୍ଟେ ସେ ଦୁଇଟି ସନ୍ତାନଙ୍କର ଲାଳନପାଳନ କରି ଆସିଛନ୍ତି । ଗାଁରେ କାହାରି କାହାରି ଘରେ କବଳା କୁଲିକାମ କରି କିମ୍ବା ସରକାରୀ ସାମୟିକ ରାସ୍ତାଘାଟ, ବନ୍ଧବାଡ ତିଆରି କାମରେ ମଜୁରୀ ସୂତ୍ରରେ କାମକରି ଦୈନନ୍ଦିନ ଗୁଜରାଣ ମେଣ୍ଟାଉ ଥିଲେ । ପରିବାର ପ୍ରତିପୋଷଣରେ ଭାରି ହନ୍ତସନ୍ତ ହେବାକୁ ପଡୁଥିଲା ।

ସବୁଦିନ ସମାନ ଯାଏନା ତା'ର ଚଳଣିରେ ସହାୟତା ପାଇଁ ଭଗବାନ ବାଟ ଫିଟାଇଲେ । ସରକାରଙ୍କର ଦାରିଦ୍ର୍ୟ ଦୂରୀକରଣ ଯୋଜନା ଉକ୍ତ ଅଞ୍ଚଳରେ କାର୍ଯ୍ୟକାରୀ ହେଲା । ତାଙ୍କୁ ନାମମାତ୍ର ଚାଷୀ ହିସାବରେ ଗଣନା କରି ବ୍ଲକ୍ ଜରିଆରେ ଗୋଟିଏ କ୍ଷୁଦ୍ର ବ୍ୟବସାୟ ପାଇଁ ହିତାଧିକାରିଣୀ ରୂପେ ଅନ୍ତର୍ଭୁକ୍ତ କରାଗଲା । ତାଙ୍କ ଋଣ ଦରଖାସ୍ତ ବଲାଙ୍ଗୀର ଷ୍ଟେଟ୍ ବ୍ୟାଙ୍କରେ କୃଷି ଉନ୍ନୟନ ଶାଖାରେ ମଞ୍ଜୁରୀପ୍ରାପ୍ତ ହୋଇ ତାଙ୍କୁ କ୍ଷୁଦ୍ର ବ୍ୟବସାୟ ପାଇଁ ୧,୫୦୦ ଟଙ୍କା ସହାୟତା ଏକ ଋଣମେଳାରେ ପ୍ରଦାନ କରାଗଲା । ସବ୍‌ସିଡି ଓ ଅନ୍ୟାନ୍ୟ ସହାୟତାକୁ ଛାଡି ତାଙ୍କୁ ୮୧୦ ଟଙ୍କା ଋଣ ପରିଶୋଧ କରିବାକୁ ଥିଲା । ତାଙ୍କର ଅଦମ୍ୟ ଚେଷ୍ଟା ଓ ଆନ୍ତରିକ ବ୍ୟବସାୟ ଫଳରେ ସେ ୧୯୮୭ ମସିହାରେ ପାଇଥିବା ଋଣକୁ ୧୯୮୮ ଫେବୃୟାରୀ ମାସ ମଧ୍ୟରେ ସମ୍ପୂର୍ଣ୍ଣ ପରିଶୋଧ କରିସାରିଛନ୍ତି । ସେ ଉଇଁସା ଗ୍ରାମଠାରୁ ବଡ ଦୋକାନୀମାନଙ୍କଠାରୁ ଦେଶରାତି ସାମାନପତ୍ର ଆଣି ନିଜ ଗ୍ରାମରେ ଗୋଟିଏ ଦୋକାନ କରି ଗ୍ରାମର ଲୋକଙ୍କୁ ଆବଶ୍ୟକୀୟ ଜିନିଷ ଯୋଗାଉଥାନ୍ତି । ଏହାଦ୍ୱାରା ଲୋକେ ଜିନିଷ କିଣିବାର ସୁଯୋଗ ନିଜ ଗ୍ରାମରେ ପାଉଥାନ୍ତି ଏବଂ ସେ ନିଜେ ମଧ୍ୟ ଉପକୃତ ହୁଅନ୍ତି । ଲାଭାଂଶରୁ ନିଜର ପରିବାର ପ୍ରତିପୋଷଣ କରିବା ସଙ୍ଗେସଙ୍ଗେ ଋଣ ଶୁଝିବାରେ ସମର୍ଥ ହୋଇଥିବାରୁ ସେ ସନ୍ତୋଷ ପ୍ରକାଶ କରନ୍ତି । ପୁନର୍ବାର ଋଣ ପାଇବା ପାଇଁ ସେ ଦରଖାସ୍ତ କରିଥିବା ପ୍ରକାଶ କରନ୍ତି । ତାଙ୍କର ବ୍ୟବସାୟକୁ ଆହୁରି ବଡ ଆକାରରେ କରିବାକୁ ତାଙ୍କର ଆଗ୍ରହ । ଏଥିରେ ସମସ୍ତ ପ୍ରକାର ସହାଯ୍ୟ ଓ ସହଯୋଗ କରନ୍ତି ଏକମାତ୍ର ଭରସା ପୁଅ କପିଳେଶ୍ୱର ଧରୁଆ । ଦୃଢମନ ଓ ଅଧ୍ୟବସାୟ ଫଳରେ ଆତ୍ମତୃପ୍ତି ଲାଭ କରନ୍ତି । ତାଙ୍କର ଆର୍ଥିକ ଅବସ୍ଥା ପୂର୍ବାପେକ୍ଷା ସ୍ୱଚ୍ଛଳ ହୋଇଥିବାରୁ ଏବଂ ଦରିଦ୍ର ସୀମାରେଖା ଅତିକ୍ରମ କରିଥିବାରୁ ସେ ଖୁସୀମନ ।

ଶ୍ରୀ ଈଶ୍ୱର ପ୍ରସାଦ ସିଂହ

## କ୍ଷେତ ହସିଲା, ରତ୍ନ ବର୍ଷିଲା

କୃଷି ପ୍ରଧାନ ଭାରତବର୍ଷର ପ୍ରଶସ୍ତି, ସମୃଦ୍ଧି ତଥା ପ୍ରଗତି କୃଷକର ମୁହଁରେ ହସର ସୁଅ ଛୁଟିବା ଉପରେ ନିର୍ଭର କରେ । ଏ ହସଟି ପାଇଁ ମାଟିର ମଣିଷ ମାଟି ସଙ୍ଗେ ମୁଣ୍ଡର ଝାଳ ତୁଣ୍ଡରେ ମାରି ସୁନା କେରାକେରା ଧାନ ପେଣ୍ଡା ବା ସଣ ଫଳାଉଛି । ଗଞ୍ଜାମ ଜିଲ୍ଲାକୁ ଶସ୍ୟ-ଭଣ୍ଡାର ବା ଧାନର ଅମାର କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଜ୍ଞାନର ପ୍ରଗତି ସଙ୍ଗେସଙ୍ଗେ ଦେଶର ପ୍ରଗତିଶୀଳ ସରକାରଙ୍କର ପ୍ରଗତି ଅଭିମୁଖୀ କୃଷି କ୍ଷେତ୍ରରେ ଲାଗୁ କରାଯାଉଛି । ଆଣବିକ ବିସ୍ଫୋରଣକୁ ଶାନ୍ତି-ସମୃଦ୍ଧି ନିମନ୍ତେ ତଥା ମାନବ-ସମାଜର ପେଟକୁ ଆହାର ଯୋଗାଇବାକୁ କୃଷିତୀର୍ଥ ଭାରତ ବର୍ଷରେ ବିନିଯୋଗ କରାଯାଉଛି । ତାହାର ସୁଫଳ ଭାରତବାସୀ ବିଶେଷରେ କୃଷକ ସମାଜ କୃଷି ଦିଗରେ ଲଗାଉଛନ୍ତି ।

ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ବ୍ଲକ୍ ଅନ୍ତର୍ଗତ ଋଷିକୁଲ୍ୟା ନଦୀ ଅବବାହିକାରେ ପମୁଲୀ ଗ୍ରାମର ଚାଷୀମାନେ ଚାଷକୁ ହିଁ ନିଜର ଜୀବନ ଭାବେ ଅବାହମାନ କାଳରୁ ଧରି ନେଇଛନ୍ତି । ସମୟର ପ୍ରଗତି ସଙ୍ଗେସଙ୍ଗେ କୃଷିକୁ ସମୃଦ୍ଧି ମାର୍ଗରେ ପରିଚାଳନା କରି ଅଧିକରୁ ଅଧିକ ଧାନ-ଫସଲ ଉତ୍ପାଦନ ନିମନ୍ତେ ପାମୁଲୀ କୃଷିତୀର୍ଥ ଗ୍ରାମର ଚାଷ-ଜୀବୀ ଶ୍ରୀ ମଦନମୋହନ ପାଣିଗ୍ରାହୀ ଗତ ଧାନ ଫସଲ ଅଦାୟରେ ଓଡିଶାରେ ରେକର୍ଡ ଭଙ୍ଗ କରି ପାରିଛନ୍ତି ।

ଶ୍ରୀ ମଦନମୋହନ ପାଣିଗ୍ରାହୀ ଗ୍ରାମର ବଡଚାଷୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ସମସ୍ତ ବୈଜ୍ଞାନିକ ପଦ୍ଧତି ଅନୁସରଣ କରି, ସାର-କୀଟନାଶକ ଦ୍ରବ୍ୟର ଆନୁପାତିକ ବ୍ୟବହାର କରିବା ସଙ୍ଗେସଙ୍ଗେ ନିଜ ଚାଷ ଜମିର ଚାହିଦା ପୂରଣ କରି ଆସୁଥିଲେ । ଛତ୍ରପୁର କୃଷିଜିଲ୍ଲା ଅଧିକାରୀଙ୍କ ପ୍ରତ୍ୟକ୍ଷ ପରାମର୍ଶ, ପରିଦର୍ଶନ ସହ ଭାଟକୁ ମରଡା କୃଷି ସମ୍ପ୍ରସାରଣ ଅଧିକାରୀ ଓ ପାମୁଲୀ ଗ୍ରାମ୍ୟ କୃଷି କର୍ମଚାରୀଙ୍କ ସହଯୋଗ କ୍ରମେ ଫସଲ ଅଦାୟର ସୁପଥ ଧରି ନେଇ ଆସିଛନ୍ତି ।

ଗତ ବର୍ଷ ଋତୁରେ ସାବିତ୍ରୀ ଧାନ ଚାଷ କରି ଅଭୂତପୂର୍ବ ଅମଳ ପାଇଁ ସାରା ଓଡିଶାରେ ପ୍ରଖ୍ୟାତ ଚାଷୀରୂପେ ସୁପରିଚିତ ଓ ପରିଗଣିତ ହୋଇ ପାରିଥିବାରୁ ଓଡିଶା ସରକାରଙ୍କ ସମ୍ମାନ ଜନକ ପୁରସ୍କାର ପାଇବାକୁ ମନୋନୀତ ହୋଇ ପାରିଛନ୍ତି । ସେ ପ୍ରାମାଣିକ ବିଶୋଧିତ ବିହନ କୃଷି ବିଭାଗ ତରଫରୁ ପାଇ ଅନୁମୋଦିତ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରି ହେକ୍ଟର୍ ପ୍ରତି ୧୬୮ କ୍ୱିଣ୍ଟାଲ୍ ଧାନ ଅମଳ କରି ପାରିଛନ୍ତି ।

ପ୍ରତି ହେକ୍ଟର୍ ଜମିରେ ୬୦ କେ.ଜି. ଯବକ୍ଷାରଜାନ, ୩୦ କେ.ଜି. ଫସଫରସ୍, ୩୦ କେ.ଜି. ପଟାସ୍ ସାର ଏବଂ ୧୫ ଶଗଡ ଗୋବର ଖତ ପ୍ରୟୋଗ କରିଥିଲେ । ସେ ଯବକ୍ଷାରଜାନ ସାରକୁ ଧାନ ରୋଇବା ସମୟରେ କାଦୁଅରେ ୧୫ କେ.ଜି. ଓ ରୋଇବାର ୧୫ ଦିନ ପରେ ଆଉ ୩୦ କେ.ଜି. ପିଲସାର

ହିସାବରେ ଏବଂ ଫୁଲ ଉଡାଇବାର ୧୮ ଦିନ ପୂର୍ବରୁ ଅବଶିଷ୍ଟ ୧୫ କେ.ଜି. ଯୋଡସାର ହିସାବରେ ବ୍ୟବହାର କରିଥିଲେ ।

ଫସଲ ସଂରକ୍ଷଣ ବ୍ୟବସ୍ଥା ଉପଯୁକ୍ତ ସମୟରେ ଅବଲମ୍ବନ କରାଯାଇ ଫସଲକୁ ରୋଗ ଓ ପୋକ ଆକ୍ରମଣ ଦାଉରୁ ରକ୍ଷା କରାଯାଇଥିଲା । ଉପଯୁକ୍ତ ଜଳ ନିୟନ୍ତ୍ରଣ ବ୍ୟବସ୍ଥା ଫସଲର ବିଭିନ୍ନ ଅବସ୍ଥାରେ ପରିଚାଳିତ କରାଯାଇଥିଲା । ସ୍ୱତନ୍ତ୍ର ଭାବେ ପିଲ ଓ ଫୁଲ ଉଡାଇବାର ଅବସ୍ଥା ପ୍ରତି ସପନ୍ ଦୃଷ୍ଟି ଦିଆଯାଇଥିଲା । ଧାନ ଅମଳ ଅବସ୍ଥାରେ କୃଷି ବିଭାଗ ତରଫରୁ ମଦନ ମୋହନ ପାଣିଗ୍ରାହୀଙ୍କ ଧାନ ନମୁନା ସଂଗ୍ରହ କରାଯାଇଥିଲା । ଛତ୍ରପୁର ଜିଲ୍ଲା କୃଷି ଅଧିକାରୀ, ପୁରୁଷୋତ୍ତମପୁର ବ୍ଲକ୍, ସମ୍ପୃକ୍ତ ଗ୍ରାମ୍ୟ କୃଷି କର୍ମଚାରୀ ଏବଂ ପରିସଂଖ୍ୟାନ ବିଭାଗର କ୍ଷେତ୍ର କର୍ମଚାରୀ ତଥା ଗ୍ରାମ୍ୟ ଉତ୍ପାଦନ କମିଟିଙ୍କ ଉପସ୍ଥିତିରେ ଉପରୋକ୍ତ ଉତ୍କୃଷ୍ଟ ଅମଳର ନମୁନା ଫସଲକାଟ ତା ୧୩.୧୨.୧୯୯୮ ରିଖରେ ଅଭିଲିଖିତ କରାଯାଇଥିଲା । ବାସ୍ତବରେ ଶ୍ରୀ ପାଣିଗ୍ରାହୀ କୃଷି କ୍ଷେତ୍ରରେ ନିଜକୁ ଶ୍ରେଷ୍ଠ ଚାଷୀ ରୂପେ ତଥା ପ୍ରୟୋଗୋପଯୋଗୀ କୃଷିଜୀବୀ ରୂପେ ପରିଚିତ କରି ପାରିଛନ୍ତି ।

ଶ୍ରୀ ଦାମୋଦର ପାତ୍ର,



# ସମ୍ବାଦ ପରିକ୍ରମା

## ଗତବର୍ଷରେ ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ

ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ ଗତ ଆର୍ଥିକ ବର୍ଷରେ ତା'ର ୧୦ଟି ଶିଳ୍ପ ସଂସ୍ଥାରୁ ବିକ୍ରୟ ବାବଦକୁ ୧୪୦ କୋଟି ଟଙ୍କା ଆଦାୟ କରିପାରିଛି । ଏହି ପରିମାଣ ପୂର୍ବ ବର୍ଷ ପରିମାଣର ଶତକଡ଼ା ଦଶ ଭାଗ ଅଧିକ । ସିମେଣ୍ଟ, କେବୁଲ, ସ୍ପନ ପାଇପ୍, ଲୁହାଛଡ଼ ଓ ସୂତା ଇତ୍ୟାଦି ବଜାରରେ ତୀବ୍ର ପ୍ରତିଯୋଗିତାର ସମ୍ମୁଖୀନ ହୋଇ ମଧ୍ୟ ଉଲ୍ଲିଖିତ ପ୍ରଗତି ସମ୍ଭବ ହୋଇ ପାରିଛି । କେବଳ ବିକ୍ରୟ କ୍ଷେତ୍ରରେ ନୁହେଁ, ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପୂର୍ବବର୍ଷ ଅପେକ୍ଷା ଗତବର୍ଷ ଉକ୍ତ ନିଗମ ଉଲ୍ଲେଖନୀୟ ପ୍ରଗତି କରିପାରିଛି ।

ବଡ଼ବିଲସ୍ଥିତ କଳିଙ୍ଗ ଲୁହା କାରଖାନା ଉକ୍ତ ବର୍ଷ ଏହାର ଉତ୍ପାଦନ କ୍ଷମତାର ଶତକଡ଼ା ୧୨୪ ଭାଗ କ୍ଷମତା ବିନିଯୋଗ କରିପାରିଛି । ଶିଳ୍ପ ଉନ୍ନୟନ ନିଗମ ଗଠନ ପରେ ହାତକୁ ନେଇଥିବା ଶିଳ୍ପ ସଂସ୍ଥାମାନଙ୍କ ମଧ୍ୟରୁ ଏହି କାରଖାନା ଅନ୍ୟତମ । ଏହି କାରଖାନାର ଘନଲୁହା ଉତ୍ପାଦନ କ୍ଷେତ୍ରରେ ଗତବର୍ଷ ସର୍ବୋଚ୍ଚ ପରିମାଣ ଉତ୍ପାଦନ ହାସଲ କରି ରେକର୍ଡ଼ ସୃଷ୍ଟି କରିପାରିଛି ।

ଏହି ସମୟ ମଧ୍ୟରେ ଉକ୍ତ ନିଗମର ଅନ୍ୟ ଏକ ସଂସ୍ଥା ଯାଜପୁରରୋଡସ୍ଥିତ ଫେରୋକ୍ରୋମ କାରଖାନା ଯୁକ୍ତରାଷ୍ଟ୍ର ଆମେରିକାକୁ ହାଇକାର୍ବନ ଫେରୋକ୍ରୋମ ରପ୍ତାନୀ କରି ପାଞ୍ଚ କୋଟି ଟଙ୍କା ମୂଲ୍ୟର ବୈଦେଶିକ ମୁଦ୍ରା ଅର୍ଜନ କରିଛି ।

ଅଭିଜ୍ଞ ଏବଂ ଯୋଗ୍ୟତା ସଂପନ୍ନ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପରିଚାଳିତ ଉକ୍ତ ନିଗମ ଗତ ବହୁବର୍ଷ ଧରି ନିୟମିତ ଭାବରେ ଲାଭ କରିଆସୁଛି । ରାଜ୍ୟର ଶିଳ୍ପ ବିକାଶ କ୍ଷେତ୍ରରେ ଏହାର ଅବଦାନ ଯଥେଷ୍ଟ ବେଶୀ । ଏତଦ୍‌ବ୍ୟତୀତ ଏହାର ନଅ ହଜାର କର୍ମଚାରୀ ଏବଂ କାରଖାନା ଆଖପାଖରେ ରହୁଥିବା ହଜାର ହଜାର ବ୍ୟକ୍ତିବିଶେଷଙ୍କ ସୁବିଧା ସୁଯୋଗ ପାଇଁ ଏହାର ଭୂମିକା ଉଲ୍ଲେଖନୀୟ । ଏହି ନିଗମ ରାଜକୋଷକୁ ବିଭିନ୍ନ ବାବଦରେ ମୋଟ ୨୭ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ଯୋଗାଇ ପାରିଛି । ଏହି ପରିମାଣ ପୂର୍ବବର୍ଷଠାରୁ ଶତକଡ଼ା ୨୫ ଭାଗ ବେଶୀ ।

ଗତ ୨୭ ବର୍ଷ ତଳେ ଗୋଟିଏ ମାତ୍ର ଶିଳ୍ପ ସଂସ୍ଥାକୁ ନେଇ ଆରମ୍ଭ ହୋଇଥିବା ଉକ୍ତ ନିଗମ ବର୍ତ୍ତମାନ ନିଜର ନିୟନ୍ତ୍ରଣାଧୀନରେ ଦଶଟି ଶିଳ୍ପସଂସ୍ଥା, ଦୁଇଟି ସହାୟକ ସଂସ୍ଥା ଓ ମିଳିତ ଉଦ୍ୟମରେ ପ୍ରତିଷ୍ଠିତ ତିନୋଟି ଶିଳ୍ପସଂସ୍ଥା ପରିଚାଳନା କରୁଛି । ଏହି ନିଗମ କେତୋଟି ନୂଆ ଶିଳ୍ପସଂସ୍ଥା ପ୍ରତିଷ୍ଠା କରିବା ତଥା ପୁରାତନ ଶିଳ୍ପସଂସ୍ଥାର ସଂପ୍ରସାରଣ କରିବା ପାଇଁ, ରାଜ୍ୟ ସରକାର ଏବଂ ଅର୍ଥଯୋଗାଣକାରୀ ସଂସ୍ଥାଗୁଡ଼ିକର ଅନୁମତି ପାଇଛି । ଏହା ଫଳରେ ବଡବିଲସ୍ଥିତ ଲୁହା କାରଖାନାର ସଂପ୍ରସାରଣ ଯୋଜନାରେ ଚତୁର୍ଥ ବ୍ଲାଷ୍ଟ ଫର୍ଣ୍ଣେସ୍ ସ୍ଥାପନ କରାଯିବ । ଫଳରେ ଏହାର ବାର୍ଷିକ ଉତ୍ପାଦନ ଆଉ ୪୦ ହଜାର ଟନ୍ ବୃଦ୍ଧି ପାଇବ । ଯାଜପୁରରୋଡସ୍ଥିତ ଫେରୋକ୍ରୋମ କାରଖାନାଠାରେ ଦଶ ମେଗାୱାଟ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ନିଜସ୍ୱ ଡିଜେଲ ଜେନେରେଟିଂ ସେଟ୍ ପ୍ରତିଷ୍ଠା କରାଯିବ । ଷୋହଳହଜାର ମେଟ୍ରିକ୍ ଟନ୍ ଇସ୍ପାତ୍ ଓ ଟିଟାନିୟମ୍ କଣ୍ଡେନ୍‌ସର ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ କାରଖାନା ପ୍ରତିଷ୍ଠା ମଧ୍ୟ ଏହି ଯୋଜନାର ଅନ୍ତର୍ଭୁକ୍ତ । ଏହି କଣ୍ଡେନ୍‌ସର ଟ୍ୟୁବ୍ କାରଖାନାଟି ପଶ୍ଚିମ୍ ଜର୍ମାନୀର ଏକ ବିଶେଷଜ୍ଞ ସଂସ୍ଥାର କାରିଗରୀ ସହଯୋଗିତାରେ ପ୍ରତିଷ୍ଠା କରାଯିବ ।

ଆଗାମୀ ୩/୪ ବର୍ଷ ମଧ୍ୟରେ ଉକ୍ତ ନିଗମ ବିକ୍ରୟ ବାବଦକୁ ବାର୍ଷିକ ୨୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଆୟ କରି ପାରିବ ବୋଲି ଆଶା କରାଯାଏ ।

## ଜନହିତକର ପ୍ରକଳ୍ପର ଉଦ୍‌ଘାଟନ

ନିଖିଳ ଭାରତ ସ୍ୱାୟତ୍ତ ଶାସନ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭୁବନେଶ୍ୱର ପୌର ସଂସ୍ଥାର ଉଦ୍ୟମରେ ପୌରାଞ୍ଚଳର ବିଭିନ୍ନ ସ୍ଥାନରେ ବହୁ ଜନହିତକର ପ୍ରକଳ୍ପର ଶୁଭ ଉଦ୍‌ଘାଟନ କରିଛନ୍ତି ।

ମୁଖ୍ୟମନ୍ତ୍ରୀ ସହର ସନ୍ନିକଟ କପିଳେଶ୍ୱର ଗ୍ରାମରେ ବିପୁଳ ଜନ ସମାବେଶ ମଧ୍ୟରେ ୧ ଲକ୍ଷ ୩୪ ହଜାର ୩୦୦ ଟଙ୍କା ବ୍ୟୟରେ ନିର୍ମିତ ପୌର ବ୍ୟାୟାମ ଶାଳା ଉନ୍ମୋଚନ କରିଛନ୍ତି । ବ୍ୟାୟାମଶାଳାର ପାରିପାର୍ଶ୍ୱିକ ପରିବେଶ ଉନ୍ନୟନ ପାଇଁ ପୌର

ସଂସ୍ଥା ପକ୍ଷରୁ ୬୯,୭୦୦ ଟଙ୍କା ବ୍ୟୟ ଅଟକଳ କରାଯାଇଛି ବୋଲି ସୂଚନା ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଅନ୍ୟାନ୍ୟ ବର୍ଷ ତୁଳନାରେ ଚଳିତ ବର୍ଷ ଉକ୍ତ ଦିବସଟିର ମହତ୍ୱ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି କହିଥିଲେ । କପିଳେଶ୍ୱର ମନ୍ଦିର ଟ୍ରଷ୍ଟକୁ ନୀତି ପରିଚାଳନା ଖର୍ଚ୍ଚ ବାବଦରେ ମୁଖ୍ୟମନ୍ତ୍ରୀ ୫୦ ହଜାର ଟଙ୍କାର ଏକ ଚେକ୍ ପ୍ରଦାନ କରିଛନ୍ତି । ଏହାପରେ ସୁନ୍ଦରପଦା ଗ୍ରାମରେ ଭୁବନେଶ୍ୱର ପୌରପାଳିକା ତରଫରୁ ୬୮,୭୨୦ ଟଙ୍କା ବ୍ୟୟରେ ଗୋଷ୍ଠିଦାସ ବାବା ସ୍ମୃତି ଭବନ ଏବଂ ପୁରୁଣା ଭୁବନେଶ୍ୱର କୁମ୍ଭାରପାଟଣା ସାହି ନିକଟରେ ବଡ଼ଗଡ଼ ଅଞ୍ଚଳ ଯୁବକମାନଙ୍କ ମଧ୍ୟରେ ଶାରୀରିକ ବ୍ୟାୟାମର ପ୍ରସାର ପାଇଁ ପୌର ସଂସ୍ଥା ତରଫରୁ ଏକଲକ୍ଷ ଆଠ ହଜାର ଟଙ୍କା ବ୍ୟୟରେ ଏକ ବ୍ୟାୟାମଶାଳାକୁ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିଛନ୍ତି । ଆଉମଧ୍ୟ ମୁଖ୍ୟମନ୍ତ୍ରୀ ବରଗଡ଼ ଗ୍ରାମ ନିକଟସ୍ଥ ହାଟରେ ପୌର ସଂସ୍ଥା ତରଫରୁ ନିର୍ମିତ ୭୪ ଟି ବିଭିନ୍ନ କିସମର ଦୋକାନ ଘର ଓ ୩୦ଟି ପିଣ୍ଡି ଉଦ୍‌ଘାଟନ କରି ସ୍ଥାନୀୟ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ସେଗୁଡ଼ିକୁ ଉତ୍ସର୍ଗ କରିଛନ୍ତି । ଏ ବାବଦରେ ବ୍ୟୟ ହୋଇଥିବା ସମୁଦାୟ ୮ ଲକ୍ଷ ୯୯ ହଜାର ୭୮୦ ଟଙ୍କା ମଧ୍ୟରୁ ରାଜ୍ୟ ସରକାର ଏକଲକ୍ଷ ୪୦ ହଜାର ଟଙ୍କା ଅନୁଦାନ ଆକାରରେ ଦେଇଛନ୍ତି ଓ ଅବଶିଷ୍ଟ ଅର୍ଥ ପୌର ପାଣ୍ଠିରୁ ବହନ କରାଯାଇଛି ।

ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବଟକୃଷ୍ଣ ଜେନା ସ୍ଥାନୀୟ ପୌରପାଳିକା କାର୍ଯ୍ୟାଳୟଠାରେ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ଏ ଉପଲକ୍ଷେ ଆୟୋଜିତ ଏକ ଜନ ସମାବେଶରେ ମୁଖ୍ୟ ଅତିଥି ଭାବେ ଉଦ୍‌ବୋଧନ ଦେଇ ଶ୍ରୀ ଜେନା କହିଲେ ଯେ କଟକ ଓ ଭୁବନେଶ୍ୱର ସହର ଦୁଇଟିକୁ ଯଥାଶୀଘ୍ର କର୍ପୋରେସନ୍ କରାଯିବ । ଭୁବନେଶ୍ୱର ପରି କ୍ରମବର୍ଦ୍ଧମାନ ସହରକୁ ଏକ ରୁଚି ସଂପନ୍ନ ଓ ସୁନ୍ଦର ସହର ରୂପେ ଗଢ଼ିବା ଏବଂ ସ୍ଥାନୀୟ ନାଗରିକଙ୍କୁ ସାମାଜିକ ନ୍ୟାୟ ସର୍ବନିମ୍ନ ଆବଶ୍ୟକତା ଯୋଗାଇ ଦେବାକୁ ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶ କ୍ରମେ ସରକାର ବିଭିନ୍ନ ପଦକ୍ଷେପ ନେଉଛନ୍ତି ବୋଲି ଶ୍ରୀ ଜେନା କହିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ ସମସ୍ତ କାର୍ଯ୍ୟକ୍ରମରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ଜେନା ଯୋଗ ଦେଇଥିଲେ ।

ନଗରପାଳ ତଥା ଜିଲାପାଳ ଶ୍ରୀ ସୁଦାମ ଚରଣ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସଭାରେ ବିଧାୟକ ଶ୍ରୀ ସୁରେଶ କୁମାର ରାଉତରାୟ ଓ ଡକ୍ଟର ଲଳିତ ମୋହନ ମହାନ୍ତି ଏବଂ 'ସମ୍ବାଦ'ର ସଂପାଦକ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ସମ୍ମାନିତ ଅତିଥି ଭାବେ ଉଦ୍‌ବୋଧନ ଦେଇ ପୌର ସଂସ୍ଥାର ଉନ୍ନୟନ କାର୍ଯ୍ୟ ପ୍ରଶଂସନୀୟ ବୋଲି କହିଥିଲେ । ପ୍ରାରମ୍ଭରେ ନିର୍ବାହୀ ଅଧିକାରୀ ଶ୍ରୀ ସର୍ବେଶ୍ୱର ମହାନ୍ତି ଭାଷଣ ପ୍ରସଙ୍ଗରେ ବିଭିନ୍ନ ଉନ୍ନୟନ କାର୍ଯ୍ୟ ଓ ଆୟ ବ୍ୟୟ ସଂପର୍କରେ ବିବରଣୀ ପାଠ କରିଥିଲେ ।

## ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ଲାଗି ମୁଖ୍ୟମନ୍ତ୍ରୀଙ୍କ ନିବେଦନ

ଚଳିତ ବର୍ଷ ସେପ୍ଟେମ୍ବର ୫ ତାରିଖ ଉପଲକ୍ଷେ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟବାସୀ, ବିଶେଷକରି ରାଜ୍ୟର ସମସ୍ତ ସିନେମା ଗୃହ ମାଲିକମାନଙ୍କୁ ନିବେଦନ କରିଛନ୍ତି । ନିବେଦନର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା:—

''ଅଷ୍ଟାବିଂଶତମ ଗୁରୁ ଦିବସ ଉପଲକ୍ଷେ ଦେଶର ନାଗରିକ ଗଠନ ଦାୟିତ୍ୱରେ ଥିବା ଅଗଣିତ ଶିକ୍ଷକଶିକ୍ଷୟିତ୍ରୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

''ପୂଜ୍ୟପୂଜା ଭାରତୀୟ ପରମ୍ପରାର ଏକ ମହାନ୍ ପ୍ରତୀକ । ବୈଦିକ ଯୁଗରୁ ଗୁରୁ ପୂଜାର ଆଦର୍ଶ ଭାରତୀୟ ସଂସ୍କୃତିର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଛି । ଆମ ଦେଶର ସାର୍ବଭୌମତ୍ୱ, ଗଣତନ୍ତ୍ର ଓ ଧର୍ମନିରପେକ୍ଷତାର ଭିତ୍ତିଭୂମିକୁ ସୁଦୃଢ଼ କରିବା ଦିଗରେ ଛାତ୍ର ସମାଜର ଅବଦାନ ଅନସ୍ୱୀକାର୍ଯ୍ୟ । ଛାତ୍ର ସମାଜକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବା ପାଇଁ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଆଦର୍ଶ କର୍ତ୍ତବ୍ୟନିଷ୍ଠା ଛାତ୍ର ସମାଜକୁ ଚିରକାଳ ପାଇଁ ପ୍ରେରଣା ଦେଉଥିବ । ସମାଜରେ ଶିକ୍ଷକମାନଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ସବୁବେଳେ ରହିଛି । ନୂତନ ଜାତୀୟ ଶିକ୍ଷାନୀତିକୁ ସଫଳ କରିବା ଦିଗରେ ମଧ୍ୟ ସେମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଦୁଃସ୍ଥ ଶିକ୍ଷକମାନଙ୍କୁ ସାହାଯ୍ୟ ଦେବା, ଅକାଳ ମୃତ୍ୟୁବରଣ କରିଥିବା ଅଥବା ଅସ୍ୱାଭାବିକ ପରିସ୍ଥିତିରେ ପଡ଼ି କିମ୍ବା କ୍ରମାଗତ ପୀଡ଼ିତ ରହିଥିବା ଶିକ୍ଷକ ଓ ତାଙ୍କର ପରିବାରଙ୍କୁ ଆର୍ଥିକ ସାହାଯ୍ୟ ଦେବା ନିମନ୍ତେ ଏକ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠି ଗଠିତ ହୋଇଛି । ଏହି ପାଣ୍ଠି ନିମନ୍ତେ ସାହାଯ୍ୟ ଦେବା ଏକ ପବିତ୍ର ସାମାଜିକ କର୍ତ୍ତବ୍ୟ ।

''ମୁଁ ରାଜ୍ୟବାସୀଙ୍କୁ ନିବେଦନ କରୁଛି ଯେ ସେମାନେ ଶିକ୍ଷକ ସମାଜର କଲ୍ୟାଣାର୍ଥେ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରନ୍ତୁ । ରାଜ୍ୟର ପ୍ରତ୍ୟେକ ପ୍ରେକ୍ଷାଳୟର ମାଲିକମାନେ ସେମାନଙ୍କ ପ୍ରେକ୍ଷାଳୟରେ ସେପ୍ଟେମ୍ବର ୫ ତାରିଖ ସଂଧ୍ୟାରେ ପ୍ରଦର୍ଶିତ ଚଳଚ୍ଚିତ୍ରର ଟିକଟ ବିକ୍ରୟଲବ୍ଧ ଅର୍ଥ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ଦାନ କରିବା ପାଇଁ ମୁଁ ନିବେଦନ କରୁଛି ।

''ଶିକ୍ଷକ କଲ୍ୟାଣ ପାଣ୍ଠି ପାଇଁ ସଂଗୃହୀତ ଦାନ ନିର୍ଦ୍ଦେଶକ, ମାଧ୍ୟମିକ ଶିକ୍ଷା, ଓଡ଼ିଶା, ଭୁବନେଶ୍ୱରଙ୍କ ନିକଟକୁ ପଠାଇବାକୁ ଅନୁରୋଧ ।''

## ନଡ଼ିଆ ଚାଷ ପାଇଁ ଅଧିକ ସହାୟତା

କୃଷି ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ଛତ୍ରପୁର ନଡ଼ିଆ ଫାର୍ମରେ ନାରିକେଳ ଉନ୍ନୟନ ବୋର୍ଡ ଦ୍ୱାରା ଆୟୋଜିତ ଏକ ନଡ଼ିଆ ଚାଷୀ ସମାବେଶରେ ଗଞ୍ଜାମ ଜିଲାର ୨୬୦ ଜଣ ନଡ଼ିଆ ଚାଷୀଙ୍କୁ ୧,୩୩,୪୮୫ ଟଙ୍କାର ଚେକ୍ ବଣ୍ଟନ କରିଥିଲେ ।

ଗଞ୍ଜାମ ଜିଲାରେ ୧୦୪ ହେକ୍ଟର ଜମିରେ ନଡ଼ିଆ ଚାଷ ବୃଦ୍ଧି କରି ଆରମ୍ଭ କରାଯାଇଛି । ଏହି ଚାଷର ଉନ୍ନତି ନିମନ୍ତେ ସରକାର ହେକ୍ଟର ପ୍ରତି ୩,୦୦୦ ଟଙ୍କା ସାହାଯ୍ୟ ଦେଉଛନ୍ତି । ପ୍ରଥମ ବର୍ଷ ୧,୨୫୦ ଟଙ୍କା ଓ ପରବର୍ତ୍ତୀ ୪ ବର୍ଷରେ ଅବଶିଷ୍ଟ ଟଙ୍କା ସମାନ କିସ୍ତିରେ ଦିଆଯାଏ । ୧୯୮୪–୮୫ରୁ ୧୯୮୮–୮୯ ମଧ୍ୟରେ ୭୪୭ ହେକ୍ଟର ଜମି ପାଇଁ ୧,୫୧୩ ଜଣଙ୍କୁ ୧୦,୮୧,୭୧୦ ଟଙ୍କା ଦିଆଯାଇଛି । କଟକ ଜିଲା ବିଶ୍ୱନାହାକାଣିଠାରେ ୫୦ ହେକ୍ଟର ଜମିରେ ଉନ୍ନତ ମାନର ନଡ଼ିଆ ଚାରା ଉତ୍ପନ୍ନ ପାଇଁ ବ୍ୟବସ୍ଥା ହୋଇଛି । ସାଧାରଣ ଚାଷୀଙ୍କୁ ବୈଜ୍ଞାନିକ ପଦ୍ଧତିରେ ନଡ଼ିଆ ଚାଷ ଓ ଏହାର ଉପଯୋଗିତା ପ୍ରଦର୍ଶନ ନିମନ୍ତେ ନାରିକେଳ ଉନ୍ନୟନ ବୋର୍ଡ ୧୨୦ଟି ପ୍ରଦର୍ଶନୀ କ୍ଷେତ୍ର ପାଇଁ ୪.୨୭ ଲକ୍ଷ ଟଙ୍କା ୧୯୮୨ରୁ ୧୯୮୭ ମଧ୍ୟରେ ଖର୍ଚ୍ଚ କରିଛନ୍ତି ।

ମନ୍ତ୍ରୀ ଶ୍ରୀ ବେହେରା ଭାଷଣ ପ୍ରସଙ୍ଗରେ ଓଡ଼ିଶା ଅନ୍ଧ୍ରରୁ ନଡ଼ିଆ ଆଣି ନିଜର ଖୁଚୁରାଣ ମେଣ୍ଟାଉଥିବା ବଡ ଦୁଃଖର କଥା ବୋଲି

ପ୍ରକାଶ କରି କହିଲେ ଯେ, ନଡ଼ିଆ ବାଡ଼ିରେ କଦଳୀ ବୃକ୍ଷ ଉଇ ଭାବରେ ହେଉଥିବା ହେତୁ ନଡ଼ିଆ ବୃକ୍ଷ ପାଇଁ ହେକ୍ଟର ପ୍ରତି ୩,୦୦୦ ଟଙ୍କା ସରକାରଙ୍କଠାରୁ ସାହାଯ୍ୟ ପାଇ ଏଥିରେ କଦଳୀ ପ୍ରଭୃତି ଆୟକାରୀ ଫସଲ କରିବା ବିଧେୟ ।

ଏହି ସମାବେଶରେ ବିଧାୟକ ଶ୍ରୀ ଅଶୋକ କୁମାର ସ୍ୱୈଧୁରୀ, ଉଦ୍ୟାନ କୃଷି ଡିରେକ୍ଟର ଶ୍ରୀ ଦାମୋଦର ମହାରଣା, ନଡ଼ିଆ ଉନ୍ନୟନ ବୋର୍ଡର ଉପ ନିର୍ଦ୍ଦେଶକ ଶ୍ରୀ ଏଲ୍. ଶିବରାମ ରେଡ଼ି ଯୋଗ ଦେଇଥିଲେ । ନଡ଼ିଆ ସ୍ରଷ୍ଟା ଶ୍ରୀ ବୀର ହନୁମାନ ସୀତାରାମ ଦାସ ପ୍ରଭୃତି ନଡ଼ିଆ ବୃକ୍ଷ ବିଷୟରେ ନିଜର ଅଭିଜ୍ଞତା ବର୍ଣ୍ଣନା କରିଥିଲେ ।

ଗୋଟିଏ ଗଛରୁ ବର୍ଷକେ ସାମାନ୍ୟ ଯତ୍ନ ନେଲେ ୨୦୦ରୁ ୩୦୦ ନଡ଼ିଆ ଉତ୍ପନ୍ନ ହେଉଥିବା ଯୋଗୁଁ ଏହାର ଯଥାଯଥ ବୃକ୍ଷ ନିମନ୍ତେ ସବୁମତେ ଚେଷ୍ଟା କରାଯାଇ ଗରିବ ଲୋକଙ୍କର ଆର୍ଥିକ ଉନ୍ନତି କରାଯିବା ପାଇଁ ସର୍ବସମ୍ମତି ମତ ପ୍ରକାଶ ପାଇଥିଲା ।

## ଘରଡ଼ିହ ଓ ବାସଗୃହ ଯୋଗାଣ

ରାଜ୍ୟରେ କାର୍ଯ୍ୟକାରୀ କରାଯାଉଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ 'ଜନସାଧାରଣଙ୍କ ପାଇଁ ଗୃହ ନିର୍ମାଣ' କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ପ୍ରଥମ ତ୍ରୈମାସରେ ୫ ହଜାର ୧୪୭ ଜଣ ବାସହୀନ ଲୋକଙ୍କୁ ଘରଡ଼ିହ ଯୋଗାଇ ଦିଆଯାଇଛି । ଏ କ୍ଷେତ୍ରରେ ଏହି ସମୟ ପାଇଁ ଥିବା ଧାର୍ଯ୍ୟ ଲକ୍ଷର ଶତକଡା ୩୯.୬୫ ଭାଗ ସଫଳତା ହାସଲ କରାଯାଇ ପାରିଛି । ଉକ୍ତ ସମୟ ମଧ୍ୟରେ ୧,୬୯୫ ଜଣଙ୍କୁ ନିଜ ନିଜର ଘର ତିଆରି ପାଇଁ ସାହାଯ୍ୟ ପ୍ରଦାନ କରାଯାଇ ଏହି ସମୟ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟର ଶତକଡା ୫୦.୮୮ ଭାଗ ସାଫଲ୍ୟ କରାଯାଇଛି ।

ସେହିପରି 'ଇନ୍ଦିରା ଆବାସ' ଯୋଜନା ମାଧ୍ୟମରେ ଗତ ଅପ୍ରେଲରୁ ଜୁଲାଇ ମାସ ଶେଷ ସୁଦ୍ଧା ତଫସିଲଭୁକ୍ତ ଜାତି ଓ ଉପଜାତିର ୫୫ ଜଣ ଲୋକ ବାସଗୃହ ପାଇଛନ୍ତି । ଆଲୋଚ୍ୟ ସମୟ ମଧ୍ୟରେ ରାଜ୍ୟରେ ଅର୍ଥନୈତିକ ଦୁର୍ବଳ ଶ୍ରେଣୀର ଲୋକଙ୍କୁ ୩୧୮ଟି ଓ ନିମ୍ନ ଆୟକାରୀ ଲୋକଙ୍କୁ ୪୭୩ଟି ଗୃହ ଯୋଗାଇ ଦିଆଯାଇଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମର ଗତ ଜୁଲାଇ ମାସ ଅଗ୍ରଗତି ସଂପର୍କୀୟ ବିବରଣୀରୁ ପ୍ରକାଶ ।

## ଓଡ଼ିଶାରେ ଦାରିଦ୍ର୍ୟର ହ୍ରାସ

ଜାତୀୟ ସାମ୍ପଲ ସର୍ଭେର ବିବରଣୀ ଅନୁଯାୟୀ ଓଡ଼ିଶାରେ ୧୯୭୭-୭୮ରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କର ଶତକଡା ହାର ୬୬.୪୦ ରହିଥିଲା । ମାତ୍ର ୧୯୮୩-୮୪ ବେଳକୁ ଏହା ଶତକଡା ୪୨.୮୦କୁ ହ୍ରାସ ପାଇଛି । ଏହି ସମୟ ମଧ୍ୟରେ ଦେଶର ଏ କ୍ଷେତ୍ରରେ ଶତକଡା ହାର ଯଥାକ୍ରମେ ୪୮.୧୮ ଓ ୩୭.୪୦ ରହିଥିଲା । ଏଥିରୁ ସ୍ପଷ୍ଟ ଯେ ୧୯୭୭-୭୮ ରୁ ୧୯୮୩-୮୪ ପର୍ଯ୍ୟନ୍ତ ଓଡ଼ିଶାରେ ଏହାର ଶତକଡା ହାର ପ୍ରାୟ ୩୫ କୁ ହ୍ରାସ ପାଇଥିବା ସ୍ଥଳେ ଜାତୀୟ ସ୍ତରରେ ଏହାର ଶତକଡା ହାର ୨୨.୫୬ ରହିଥିଲା ।

ଉଲ୍ଲେଖନୀୟ ଯେ ରାଜ୍ୟରେ ଅର୍ଥନୈତିକ କାର୍ଯ୍ୟକ୍ରମ ଏବଂ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମଗୁଡ଼ିକ ଉତ୍ତମ ରୂପେ କାର୍ଯ୍ୟକାରୀ କରାଯିବା ଫଳରେ ରାଜ୍ୟର ଗ୍ରାମାଞ୍ଚଳର ଜନସାଧାରଣଙ୍କର ଆୟପିଛା ବୃଦ୍ଧି ହେବା ଯୋଗୁଁ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ଜନସାଧାରଣଙ୍କର ସଂଖ୍ୟା ଦ୍ରୁତଗତିରେ ହ୍ରାସ ପାଇଛି ।

## ଜଳ ଅମଳ ପ୍ରକଳ୍ପ ଉଦ୍‌ଘାଟନ

ରାଜ୍ୟ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା କଳାହାଣ୍ଡି ଜିଲ୍ଲାର ଗୋଲମୁଣ୍ଡା ବ୍ଲକ୍‌ରେ ଗୁଡ଼ିଆ ନାଳ ଓ ସିନାପାଲି ବ୍ଲକ୍‌ରେ ଗୋଡାଇ ନଳା ଉପରେ ନିର୍ମିତ ଦୁଇଟି ଜଳ ଅମଳ ପ୍ରକଳ୍ପ ଉଦ୍‌ଘାଟନ କରିଛନ୍ତି । କୃଷିମନ୍ତ୍ରୀ ଶ୍ରୀ ବେହେରା ଆୟୋଜିତ ସଭାରେ କୃଷକମାନଙ୍କୁ ଏହି ପ୍ରକଳ୍ପ ଦୁଇଟିର ଜଳସେଚନ ସୁବିଧା ବିନିଯୋଗ କରି କୃଷି କାର୍ଯ୍ୟକ୍ରମ ସଫଳ କରିବା ସହିତ ଆର୍ଥିକ ଉନ୍ନତି ପାଇଁ ପରାମର୍ଶ ଦେଇଥିଲେ ।

ଜଳ ଅମଳ ପ୍ରକଳ୍ପ ଦୁଇଟି ନିର୍ମାଣ ବାବଦରେ ୫ ଲକ୍ଷ ୧୬ ହଜାର ଟଙ୍କା ସରକାର ବ୍ୟୟ କରିଛନ୍ତି ଓ ୫୫୦ ଏକର ଜମିରେ ଜଳସେଚନର ସୁବିଧା କରାଯାଇଛି । ଶ୍ରମଭିତ୍ତିକ କାର୍ଯ୍ୟରେ ୨୭,୮୯୨ ଶ୍ରମ ଦିବସ ସୃଷ୍ଟି ହୋଇଥିବା ବିଷୟରେ ବିଭାଗୀୟ କର୍ମକର୍ତ୍ତା ପ୍ରକାଶ କରିଥିଲେ ।

କୃଷିମନ୍ତ୍ରୀ ସିନାପାଲି ସେବା ସମବାୟ ସମିତିରେ ନାବାର୍ଡ ଅଗ୍ରଗାମୀ ପରିଯୋଜନା ଆନୁକୂଲ୍ୟରେ ଏକ ମିନି ସଞ୍ଚୟ କାଉଣ୍ଟର ଉଦ୍‌ଘାଟନ କରିଥିଲେ ଓ ଏହି କାଉଣ୍ଟରରେ ସଞ୍ଚୟ ଜମା ବୃଦ୍ଧି ସହିତ ଗ୍ରାମୀମାନଙ୍କ ଋଣ ସୁବିଧା ପୂରଣ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ବେହେରା ଆଶା ପ୍ରକାଶ କରିଥିଲେ । ଗ୍ରାମୀମାନଙ୍କ ପକ୍ଷରୁ ମିନି କାଉଣ୍ଟରରେ ୧ ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କା ଜମା ହୋଇଥିଲା ।

## ବିଂଶସୂତ୍ରୀ କାର୍ଯ୍ୟକ୍ରମର ଉଲ୍ଲେଖନୀୟ ସାଫଲ୍ୟ

ଗତ ଜୁଲାଇ ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ସମୀକ୍ଷାରୁ ଜଣାପଡ଼ିଛି ଯେ କେତେକ ବଛାବଛା କ୍ଷେତ୍ରରେ ଧାର୍ଯ୍ୟ ଲକ୍ଷ୍ୟ ଅତିକ୍ରମ କରି ଅଧିକ ସଫଳତା ହାସଲ କରାଯାଇ ପାରିଛି ।

ଯେଉଁସବୁ କ୍ଷେତ୍ରରେ ସଫଳତା ଶତକଡା ୯୦ ଭାଗରୁ ଅଧିକ ହୋଇଛି, ସେଗୁଡ଼ିକ ହେଲା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ, ଭୂମିହୀନଙ୍କ ମଧ୍ୟରେ ସିଲିଂ ଜମି ବଣ୍ଟନ, ପାନୀୟ ଜଳ ଯୋଗାଣ, ଆଦିବାସୀ ଓ ହରିଜନମାନଙ୍କ ଜୀବନ ଧାରଣ ମାନ ବୃଦ୍ଧି ପାଇଁ ଆର୍ଥିକ ସହାୟତା ପ୍ରଦାନ, ବାସହୀନଙ୍କୁ ଘରଡ଼ିହ ଯୋଗାଣ, ଗୃହ ନିର୍ମାଣ ପାଇଁ ସହାୟତା ପ୍ରଦାନ ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ବୃକ୍ଷ ରୋପଣ, ଗ୍ରାମ୍ୟ ବୈଦ୍ୟୁତୀକରଣ, ପମ୍ପସେଟ୍‌ଗୁଡ଼ିକୁ ବିଦ୍ୟୁତ୍ ଯୋଗାଣ ଓ ଗୋବର ଗ୍ୟାସ୍ ସ୍ଥାପନ କ୍ଷେତ୍ରରେ ମଧ୍ୟ ବିଶେଷ ସଫଳତା ହାସଲ କରାଯାଇ ପାରିଛି ବୋଲି ଜୁଲାଇ ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମର ଅଗ୍ରଗତି ସଂପର୍କୀୟ ସମୀକ୍ଷାରୁ ପ୍ରକାଶ ।

# ରାଷ୍ଟ୍ର ଚିନ୍ତନ ଓ ରାଷ୍ଟ୍ରୀୟ ଚେତନା

ଅଧ୍ୟାପକ ଶତ୍ରୁଘ୍ନ ନାଥ

ରାଷ୍ଟ୍ର ସମ୍ବନ୍ଧୀୟ ଚିନ୍ତନ ଓ ଚେତନା ପରିପୂରକ । ଚିନ୍ତନ ସର୍ବାଙ୍ଗ ଶରୀର ଓ ସମସ୍ତ ବ୍ୟବସ୍ଥାରେ ଚେତନା ଆଣିଦିଏ । ଏହା ଯେତିକି ଉତ୍କଟ ହୁଏ, ଚେତନା ବିଦ୍ୟୁତ୍ ପ୍ରବାହ ପରି ସେତିକି ଘନ ଓ ଗଭୀର ହୋଇଯାଏ । ପକ୍ଷାନ୍ତରରେ ଚେତନା ଚିନ୍ତନକୁ ଶାଣିତ ଓ ନିର୍ଦ୍ଦିଷ୍ଟ କରିଦିଏ । ଚିନ୍ତାର ସ୍ରୋତ ଚେତନା ଯୋଗୁଁ ଅବାଧିତ ଓ ଅବିରତ ଛୁଟେ । ଚିନ୍ତନ ମୁଖ୍ୟତଃ ମନ, ବୁଦ୍ଧି ଓ ବିବେକରେ ଖେଳିଯାଏ, ତେଣୁ ଏହାକୁ ଅଦୃଶ୍ୟ ପ୍ରକାଶ ବୋଲି କୁହାଯାଇପାରେ । ଏହା ଆନ୍ତଃ ଦିଗ ଅଥଚ ଚେତନା ଦୃଶ୍ୟ ପ୍ରକାଶ । ଶିହରଣ, ସ୍ଫୀତି, ଆବେଗ ଆଦି ଯୋଗୁଁ ଏହା ବହିଃ ପ୍ରକାଶ । ଏହା ପରିମାପ୍ୟ ଓ ପରିଲକ୍ଷ୍ୟ । ଆକୃତି ମଧ୍ୟ ରାଷ୍ଟ୍ର ସମ୍ବନ୍ଧରେ ଚିନ୍ତନ ଓ ଚେତନାର ସମନ୍ୱୟୀ ଭାବ ହେଉଛି ରାଷ୍ଟ୍ରୀୟତା । ପରିପୂର୍ଣ୍ଣ ଅଥଚ ପରିମିତ ଏବଂ ସମୁଚିତ ପ୍ରକାଶ ହିଁ ଜାତୀୟତା ବା ରାଷ୍ଟ୍ରୀୟତା । ଚେତନା ଫେନୀଳ ତରଙ୍ଗ ସଦୃଶ ଏବଂ ଚିନ୍ତନ ସାମୁଦ୍ରିକ ଆନ୍ତଃ ସ୍ରୋତ ପରି ହେଲେ ହେଁ ଅଖଣ୍ଡ ଜଳରାଶିର ଏକ ଅଂଶରେ ନିଜର ଗୁଣ, ବର୍ଣ୍ଣ ଆଦି ଯୋଗୁଁ ବୈଶିଷ୍ଟ୍ୟ ଅର୍ଜନ କରିଥାଏ । ଠିକ୍ ସେହିପରି ଗୋଟିଏ ଭାଗର ଏକ ନିର୍ଦ୍ଦିଷ୍ଟ ଭୌଗଳିକ ସୀମା ମଧ୍ୟରେ ଇତିହାସ, ସଂସ୍କୃତି, ପରମ୍ପରା, ଶିକ୍ଷା, ସାହିତ୍ୟ ଆଦିର ସ୍ୱାତନ୍ତ୍ର୍ୟ ଯୋଗୁଁ ଜାତୀୟତା ଏକ ଅନନ୍ୟ ରୂପ ଧରିଥାଏ । ତେଣୁ ରାଷ୍ଟ୍ରୀୟତା ରାଷ୍ଟ୍ରର ସ୍ୱଧର୍ମ ଏବଂ ରାଷ୍ଟ୍ରବାସୀ ସ୍ୱଜୀବନରେ ରାଷ୍ଟ୍ରୀୟ ହୋଇ ରାଷ୍ଟ୍ରର ସ୍ୱାଭିମାନ ଓ ସ୍ୱାତନ୍ତ୍ର୍ୟ ପୋଷଣ କରନ୍ତି ଓ ବିକାଶ କରନ୍ତି ।

ଆମ ଦେଶରେ ଆଜି ସାମ୍ପ୍ରତିକ ସ୍ଥିତି ଜଟିଳ ଓ ଭୟାବହ ହୋଇଛି । ଖଳ ଚକ୍ରାନ୍ତ ଅନେକ ସମୟରେ ବହୁରୂପୀ ହୋଇ ଜାତୀୟ ଜୀବନକୁ ନାନା ଭାବରେ ଆଘାତ ଦେଉଛି । ଅସୂୟା ଓ ବିଦ୍ୱେଷ ଯୋଗୁଁ ବହିଃଶତ୍ରୁ ଆକ୍ରମଣର ସୁଯୋଗ ଖୋଜୁଛନ୍ତି । ଧମକଚମକ ଦ୍ୱାରା ସେମାନଙ୍କ ରଣକୌଶଳ ଓ ପ୍ରସ୍ତୁତିର ସଙ୍କେତ ଦେଉଛନ୍ତି । ସୀମା ସମସ୍ୟା କେବେକେବେ ଧନଜୀବନ ହାନିର କାରଣ ହେଉଛି । ଆମ ପଡ଼ୋଶୀ ଅଞ୍ଚଳର ରାଷ୍ଟ୍ରର ଗୃହ ବିବାଦରେ ବୃହତ୍ ଶକ୍ତିଙ୍କର ଯୁଦ୍ଧଖୋର ହସ୍ତକ୍ଷେପ ଆମ ପ୍ରତି ଆହ୍ୱାନ ହୋଇ ରହୁଛି । ଏହାଛଡ଼ା ଆଭ୍ୟନ୍ତରୀଣ କନ୍ଦଳ "ଘର ଢିଙ୍କି କୁମ୍ଭୀର" ପରି ଅନ୍ତର୍ଘାତୀ ହୋଇ ରହିଛି । ଆଞ୍ଚଳିକତା, ସାମ୍ପ୍ରଦାୟିକତା, ବିଚ୍ଛିନ୍ନତାବାଦ ଆଦି କୁତ୍ସିତ, କଦାକାର ଓ ବିରାଟକାୟ ରୂପ ଧାରଣ କରି ଅଷ୍ଟିଭୁଜୀ ଓଟି କାଟିଲା ସଦୃଶ ଭୀଷଣ ହୋଇ ପଡ଼ିଛି । ବଡ଼ିମା, ଅହଙ୍କାର, ସ୍ୱାର୍ଥ ସର୍ବସ୍ୱତା, ଅସହିଷ୍ଣୁତା, ମୂଲ୍ୟବୋଧର ଅବକ୍ଷୟ ଆଦି ଆମ ଜାତୀୟ ଜୀବନର ବିକାଶରେ ଘୋର ପରିପନ୍ଥୀ ହୋଇଛି । ବହୁ କ୍ଷେତ୍ରରେ ଆମ ଅନଗ୍ରସରତା, ଅପାରଗତା, ଅପରିଣାମଦର୍ଶିତା, କ୍ଷମତାର ଅପପ୍ରୟୋଗ ଆଦି ଏପରି ପରିବେଶ ସୃଷ୍ଟି କରୁଛି ଯଦ୍ୱାରା ରାଷ୍ଟ୍ରୀୟତାର ବିକାଶ ପରାହୃତ ହେଉଛି । ଧର୍ମୀୟ ଜୀବନରେ ଆମେ ସାରସତ୍ୟ ଓ ସନାତନ ଆଧାର ପ୍ରତି ଭ୍ରୂକ୍ଷେପ ନକରି ବିରାଡ଼ି ବୈଷ୍ଣବ ସାଜିଛୁ ଏବଂ ଏହା ଫଳରେ ଧର୍ମ ଆମକୁ ଦେଶର ସନ୍ତାନ ଓ ମାନବ ସମାଜର ନରନାରୀ ଭାବରେ ଧାରଣ ନକରି ଭ୍ରାତୃତ୍ୱର ବନ୍ଧନକୁ ବାରଣ ଓ ବ୍ୟାହତ କରୁଛି । ବିଜ୍ଞାନ ବିରୋଧୀ କୁସଂସ୍କାରଗୁଡ଼ିକ ଆମ ଅସ୍ଥିମଜ୍ଜାଗତ ହୋଇ ରାଷ୍ଟ୍ରୀୟ ଜୀବନର କ୍ଷୟସାଧନ କରୁଛି । ଅଶିକ୍ଷା, ନିରକ୍ଷରତା ଓ ଜନସଂଖ୍ୟା ବିସ୍ଫୋରଣ ଆମ ପାଇଁ ମାରାତ୍ମକ ହେବା ସଙ୍ଗେସଙ୍ଗେ ଆମ ଜାତୀୟ ଜୀବନର ବିକାଶ ପ୍ରକ୍ରିୟାକୁ ପଙ୍ଗୁ ଓ ବ୍ୟର୍ଥ କରି ଦେଉଛି । ଆମ ପରମ୍ପରାରେ ଏହା ପ୍ରତିଷ୍ଠିତ ଯେ "ଅନାୟକ" ହେବା ଯେତେ ବିପଜ୍ଜନକ "ବହୁ ନାୟକ" ହେବା ସେତେ କ୍ଷତିକାରକ । "ଶିଖଣ୍ଡୀ ନାରୀ" ଭୂମିକା ତତୋଽଧିକ ମାରାତ୍ମକ । ଏସବୁ କେବଳ ଆସ୍ଥାକୈନ୍ଦ୍ରିକତା ଏବଂ ରାଷ୍ଟ୍ରୀୟ ଜୀବନର ପୋଷକତାରେ କୁଠାରାଘାତ କରେ । ଉଦାହରଣ ବିନା ଉଦାରଣ ସର୍ବସ୍ୱ ଜୀବନ ଆମ ପାଇଁ ଆହ୍ୱାନ ହୋଇ ରହେ । ତେଣୁ ଆମ ସମସ୍ୟା ହେଉଛି, ଆମ ରାଷ୍ଟ୍ରୀୟ ଜୀବନର ସମୁଚିତ ବିକାଶ ସାଧନ କରିବା । ଆମ ଚିନ୍ତା ଓ ଚେତନାରେ ରାଷ୍ଟ୍ରୀୟ ଭାବନାରେ ଉଦ୍‌ବୁଦ୍ଧ ହେବା । ଜାତୀୟ ଚରିତ୍ରର ନିର୍ମାଣ ହେଉଛି ସାମ୍ପ୍ରତିକ ସ୍ଥିତିରେ ମୁଖ୍ୟ ସମସ୍ୟା । ଏ ବିଷୟରେ ଅନ୍ଧାନୁସରଣ ଆମକୁ ସାହାଯ୍ୟ କରିବ ନାହିଁ । ରାଷ୍ଟ୍ରୀୟ ଚରିତ୍ର ବିକାଶ ସମ୍ବନ୍ଧରେ ଆମେ ଅଧ୍ୟୟନ କରିବା ଏବଂ ସେଥିରୁ ଆମେ ଅଭିଜ୍ଞତା ଅର୍ଜନ କରିବା । କିନ୍ତୁ ଯୁଗ ପ୍ରଭାବ ଏବଂ ସେଥିରୁ ଆମେ ଅଭିଜ୍ଞତା ଅର୍ଜନ କରି ବିଶ୍ୱ ବକ୍ଷରେ ଅଭିନନ୍ଦିତ ମୂଲ୍ୟବୋଧ ଆମ ସଞ୍ଚିତ ଓ ପରୀକ୍ଷିତ ତଥା ବିଶ୍ୱ ବକ୍ଷରେ ସଫଳ ହେବା ଉଚିତ । ଏହାର ନିରବଚ୍ଛିନ୍ନ ଜୀବନ ଚରିତ ଓ ଚରିତ୍ରର ସଫଳ ହେବା ଉଚିତ । ଏହାର ନିରବଚ୍ଛିନ୍ନ ଜୀବନରେ ସୁସ୍ପଷ୍ଟ ହେବା ଓ ରାଷ୍ଟ୍ରୀୟ ଜୀବନରେ ସୁସ୍ପଷ୍ଟ ହେବା କ୍ରମ ଆମ ବିକାଶ ପ୍ରକ୍ରିୟା ଓ ରାଷ୍ଟ୍ରୀୟ ଜୀବନରେ ସୁସ୍ପଷ୍ଟ ହେବା ଆବଶ୍ୟକ ।

ଏହି ସବୁ କେବଳ ତତ୍ତ୍ୱବାଣୀ ନୁହେଁ । କାହାଣୀ ଓ କଥାର ଅଳଙ୍କାର ନୁହେଁ । ବାଚସ୍ପତି ବ୍ୟାଖ୍ୟାକାରଙ୍କ ସଭାମଞ୍ଚର ଭାଷଣ ନୁହେଁ । ଶ୍ରୋତାମାନଙ୍କୁ ଉତ୍ତେଜିତ କରି ଦେବାର ରଣକୌଶଳ ନୁହେଁ । ଜୀବନରେ ରୂପାୟିତ ହୋଇଛି, ବେଶଭୂଷା, ଆହାରବିହାର,

ଜୀବନଚର୍ଯ୍ୟା ଓ ଚର୍ଚ୍ଚା । ଘଣକରଣୀ, ଜୀବନ ଓ ଜୀବିକାରେ ପରିସ୍ଫୁଟ ହୋଇଛି । ଆତ୍ମିକ ଓ ଭୌତିକ ଦିଗରେ ଜୀବନକୁ ରେଖାପାତ କରିଛି । ସଙ୍କଟରେ ରକ୍ଷାକବଚ ହୋଇଛି । ଅଧିକ ଅନ୍ତାନିବାର ପ୍ରୟାସ ଓ ପରିଶ୍ରମ ନକରି ଏହି ଅଳ୍ପ ଦିନ ତଳେ ଘଟିଛି, ମାତ୍ର ସୁଦୀର୍ଘ ହୋଇଛି ଏପରି ଏକ ଯୁଗାନ୍ତକାରୀ ଐତିହାସିକ ଘଟଣା ପ୍ରତି ଦୃଷ୍ଟି ଦେବା ଓ ତାହା ହେଉଛି, ଆମ ସ୍ୱାଧୀନତା ସଂଗ୍ରାମ । ବିନା ରକ୍ତପାତରେ ଅହିଂସା ସଂଗ୍ରାମ ଭାବରେ ଏହା ସମଗ୍ର ପୃଥିବୀ ପୃଷ୍ଠରେ ଅନନ୍ୟ ସାଧାରଣ । "ସତ୍ୟମେବ ଜୟତେ"—ଏହି ଶାସ୍ତ୍ର ବାକ୍ୟର ଏହା ଅନ୍ୟ ଏକ ସଫଳ ପ୍ରୟୋଗ । "ହିଂସା – ପ୍ରଣୋଦିତ ତରବାରୀର ଜୟ, ଜୟ ନୁହେଁ" ଧଉଳିଗିରି ଏହି ନାତିଦୀର୍ଘ ଘୋଷଣାନାମାର ଅଗ୍ରିସୂଚକ "ଅହିଂସା ପରମ ଧର୍ମ" ରୂପ ନିଏ ମହାତ୍ମା ଗାନ୍ଧୀଙ୍କ ସତ୍ୟାଗ୍ରହୀର ହୃଦୟ ପରିବର୍ତ୍ତନ କୌଶଳରେ । ରାଷ୍ଟ୍ରୀୟ ଚିନ୍ତନ ଓ ଚେତନାରେ ସମଗ୍ର ଭାରତବର୍ଷ ଏକ ହୋଇଯାଏ । ଭାରତମାତାଙ୍କ ଜୟଗାନ ମୁଖରିତ ହୁଏ ବାଦ୍ୟଯନ୍ତ୍ର ତଥା ନୃତ୍ୟଗୀତର ମୂର୍ଚ୍ଛନା ପରି ପ୍ରତିଟି ପ୍ରାଣର ସ୍ପନ୍ଦନରେ । ଗିରିଗୁହା, ପୁରପଲ୍ଲୀ, କୁଟୀର, ପ୍ରାସାଦ, ସର୍ବତ୍ର ସ୍ୱାଧୀନ ଭାରତର ଆହ୍ୱାନ ପ୍ରତିଧ୍ୱନିତ ହୁଏ । ସାନଠାରୁ ବଡ଼ ପର୍ଯ୍ୟନ୍ତ, ଉଚ୍ଚ ଜନଠାରୁ ଇଶ୍ଚ ଓ ଶିଷ୍ଟ ଜନ ପର୍ଯ୍ୟନ୍ତ ସମସ୍ତେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଝାସ ଦିଅନ୍ତି ଭାରତର ଜାତୀୟ ସଂଗ୍ରାମରେ । କାରାବରଣ, ଶୋଷଣ, କଷଣଠାରୁ ଆରମ୍ଭ କରି ପ୍ରାଣବଳି ପର୍ଯ୍ୟନ୍ତ ସବୁ କିଛି ତ୍ୟାଗ କରାଯାଏ କେବଳ ଦେଶର ସ୍ୱାଧୀନତା ପାଇଁ । ନାଉରିଆଟିଏ, ଇରମ ପାଖରେ ମଡ଼େଇ ନଦୀ କୂଳରେ ଚୂଡ଼ାମଣି ପାଟ ଜଗିଥାଏ । କୁଆଁରିଆ ମଡ଼େଇ କୂଳଲଗି ଗରସ୍ରୋତକୁ ରାଜକୀୟ ଢଙ୍ଗରେ ଛାଡ଼ି ଦେଇଛି । ଇରମର ସଂଗ୍ରାମୀମାନଙ୍କୁ ଦମନ କରିବା ପାଇଁ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାରଙ୍କ ହୁକୁମନାମାରେ ଧାଇଁ ଆସିଲେଣି ବାସୁଦେବପୁର ଥାନାର ଫୌଜ । କିନ୍ତୁ ମଡ଼େଇ ସେ ଅଳସ୍ୟ । ସମାନିଆ ନାଉରିଆ ମାଡ଼ ଖାଉଛି । କଷ୍ଟରେ ଅଛୁଛି । ତଥାପି କାଡ଼କୁ ମଡ଼େଇ ଗର୍ଭରେ ଉଗାଳ ଦେଇଛି । ସେ ଦିନ ଇରମ ଜଗଦ୍ଭିତ ସଂଗ୍ରାମ ଭୂମିରେ ପରିଣତ ହୋଇଛି । ତିନି ଟଙ୍କିଆ ମୂଲ୍ୟର ସେ ନାଉରିଆ, କିନ୍ତୁ ୩୦ କୋଟି ଭାରତବାସୀଙ୍କ ସ୍ୱାଧୀନତା ପାଇଁ ସେ ଆଇନ୍ ଅମାନ୍ୟ କରିଛି । କିଏ ଚେତନା ଦେଇଛି ? ଇରମ ଜାଗି ଉଠିଛି କିପରି ? ରାଷ୍ଟ୍ରୀୟତାରେ ଦେଶର ଆବାଳ ବୃଦ୍ଧବନିତା ଜାଗି ଯାଇଛନ୍ତି । ଗଣମାଧ୍ୟମର ଢାଲ ଆଜି ଯେପରି, ସେତେବେଳେ ସେପରି ନଥିଲା । ତୁଣ୍ଡେ ତୁଣ୍ଡେ ତୁଣ୍ଡ ବାଇଦ ସହସ୍ର କୋଶ । ଜାତୀୟ ଉଦ୍ଦୀପନା ତୂରୀଭେରୀ ନାଦରେ ଗୁଞ୍ଜିଥିଲା । ଏପରି ସମୃଦ୍ଧ ଗଣ ସଂଗ୍ରାମ ସତ୍ୟ, ଅହିଂସା, ପ୍ରେମ ବଳରେ ନୀରବ ବିପ୍ଳବ ସୃଷ୍ଟି କରି ଅଘଟଣ ଘଟଣ କରିଛି । ଜାତୀୟତାର ଉଜ୍ଜ୍ୱଳ ଉଦାହରଣ, ଏହାର ପଟାନ୍ତର ନାହିଁ । ଉତ୍କଳ ଗୌରବଙ୍କ ଭାଷାରେ "ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କର, ସ୍ୱାର୍ଥକୁ ଦିଅ ଆହୁତି" । ପୁନଶ୍ଚ "ଜାତି ନଦିଯୋଗ ତରିବ କି ଭାଇ, ସ୍ୱାର୍ଥକୁ ସାରଥି କଲେ" ? ନିଷ୍କପଟ ଓ ନିସ୍ୱାର୍ଥ ରାଷ୍ଟ୍ରୀୟତାର ନିଦର୍ଶନ ହେଉଛି ଆମ ସ୍ୱାଧୀନତା ସଂଗ୍ରାମ ।

ବସ୍ତୁତଃ ରାଷ୍ଟ୍ର ଚିନ୍ତନ ହେଉଛି ଏକ ସମଗ୍ର ଚିନ୍ତନ । ସ୍ୱାର୍ଥ ଚିନ୍ତନରୁ ଊର୍ଦ୍ଧ୍ୱକୁ ଉଠି ସମଗ୍ର ଚିନ୍ତନକୁ ଗ୍ରହଣ କରିବାକୁ ହେବ । ସ୍ୱାର୍ଥ ଚିନ୍ତନ ଆମକୁ ନିମ୍ନଗାମୀ କରିଦିଏ ଓ ସମଗ୍ର ଚିନ୍ତନରୁ ଆମ ଊର୍ଦ୍ଧ୍ୱାଭିମୁଖୀ ହୋଇ ପାରିବା । ସମଷ୍ଟି ଚିନ୍ତନରୁ ସମର୍ପଣ ଭାବ ଆସେ । "ମୁଁ" ମୋର ସ୍ୱାର୍ଥ ଜଡ଼ିତ ଏହାହିଁ ବ୍ୟକ୍ତି କେନ୍ଦ୍ରିକ ବା ବ୍ୟଷ୍ଟି ଭାବନା । କିନ୍ତୁ ଆମର ଚିନ୍ତା, ଚେତନା ଓ ବିଚାରଧାରା ଯେତେ ଉଦାର, ପରାର୍ଥ ପରାୟଣ ଓ ଭାତୃଭାବାପନ୍ନ ହେବ ଆମେ ସେତେ ସମଷ୍ଟି ଭାବାପନ୍ନ ହେବା । ରାଷ୍ଟ୍ର ଓ ବିଶ୍ୱ ସେହି ସମଷ୍ଟି ଭାବନାର ପରିଣତି । ଏହି ଭାବ ବୃତ୍ତର ପରିଧିକ୍ରମେ ଏତେଦୂର ସମ୍ପ୍ରସାରିତ ହେବ ଯେ ଏହା ଦେଶାତୀତ ହୋଇ ବିଶ୍ୱାତୀତ ହେବ । ବୈଦିକ ସାହିତ୍ୟରେ ରାଷ୍ଟ୍ରକୁ ସମଗ୍ର ବିଶ୍ୱ ରୂପରେ କଳ୍ପିତ କରାଯାଇଛି । "ଲୋକାଃ ସମସ୍ତାଃ ସୁଖିନଃ ଭବନ୍ତୁ" । ଏହାହିଁ ଏକ ସାତ୍ତ୍ୱିକ ଦର୍ଶନ । ସାଧୁସନ୍ଥ ପରମ୍ପରାରେ ତଥା ବୀର ପୁରୁଷମାନଙ୍କ ଜୀବନରେ ସମସ୍ତ ରାଷ୍ଟ୍ରର କଲ୍ୟାଣ ପାଇଁ ସବୁ କିଛି ତ୍ୟାଗ ଓ ବିସର୍ଜନ କରିବାର ବହୁ ଦୃଷ୍ଟାନ୍ତ ରହିଛି । ତନ୍ମଧ୍ୟରେ ଦଧୀଚି ହେଉଛନ୍ତି ଅନ୍ୟତମ ଉଜ୍ଜ୍ୱଳ ପ୍ରତିଭା । ଯଦି ବ୍ୟକ୍ତିଗତ କଥା ହୋଇଥାନ୍ତା, ସେ ତ ଉଚ୍ଚକୋଟୀର ସାଧୁସନ୍ଥ ଥିଲେ । ତେବେ ଅସ୍ଥି ଦାନ କରିବା ଦ୍ୱାରା ସେ ଆଉ କ'ଣ ଅଧିକ ଲାଭ ପାଇବାର ଆଶା ରଖିଥିଲେ ?

ସୌଭାଗ୍ୟକ୍ରମେ ଏହି ଦେଶରେ ଆମ ରାଷ୍ଟ୍ରୀୟତା କେବଳ ଏକ ରାଜନୈତିକ ଦର୍ଶନ ନୁହେଁ । ଏହା ଆମ ସାଂସ୍କୃତିକ ଚେତନା ଦ୍ୱାରା ପରିପୋଷିତ ଓ ସମ୍ବର୍ଦ୍ଧିତ । ଏହାକୁ ଅଧ୍ୟୟନ ଓ ଆଚରଣ କଲେ ଜଣାଯାଏ ଯେ ମାତୃଭୂମି, ସଂସ୍କୃତି ଓ ରାଷ୍ଟ୍ର ପ୍ରତ୍ୟେକର ଭାବ ଏବଂ ତଦନୁକୂଳ ଆଚରଣ ହେଉଛି ରାଷ୍ଟ୍ରୀୟତା । ମାତୃଭୂମିରେ ଯୁଗେ ଯୁଗେ ଶ୍ରେଷ୍ଠ ପୁରୁଷ ଜନ୍ମ ଗ୍ରହଣ କରିଛନ୍ତି ଓ ତେଣୁ ଏହା ଆମର ସେବ୍ୟ । ଏଥିପାଇଁ ଆମେ ପ୍ରାଣ ଦେବା ପାଇଁ ପ୍ରସ୍ତୁତ ହେବା ଉଚିତ । ଠିକ୍ ଏହି ମର୍ମରେ କୁହାଯାଏ :

"ମାତୃଭୂମିଃ ପିତୃଭୂମିଃ, କର୍ମଭୂମିଃ, ସୁଜନ୍ମନାଂ
ଭକ୍ତିମର୍ହତି ଦେଶୋଽୟଂ ସେବ୍ୟଃ ପ୍ରାଣଧନୈଃ ଅପି ।"

ପ୍ରାଣଧନ ଅର୍ପଣ କରି ଆମ ଦେଶକୁ ଭକ୍ତି କରିବା । ସଂସ୍କୃତ ସାହିତ୍ୟର ସିଦ୍ଧାନ୍ତ ହେଉଛି "ରାଷ୍ଟ୍ରଦେବ ଭବ" ଅଥର୍ବ ବେଦ ମଧ୍ୟ କହନ୍ତି "ଅହଂ ଲୋକଃ ପ୍ରିୟତମଃ ଦେବେଷିଃ ଅପରାଜିତଃ" ଅଥର୍ବ ବେଦ ମଧ୍ୟ ଘୋଷଣା କରନ୍ତି ଯେ ଆମେ ସମସ୍ତେ ଶ୍ରେଷ୍ଠ ହେବା ଓ ଦେଶ ଭାବନାକୁ ଜାଗ୍ରତ ରଖିବା" । ପାଶ୍ଚାତ୍ତ୍ୟରେ ଅଥର୍ବ ବେଦ ସତର୍କ କରାଇ ଦିଅନ୍ତି, "ନିଜ ରାଷ୍ଟ୍ରର ବିକାଶ ହେଲେ ନିଜ ହିତ ହୁଏ, ଏପରି ଧ୍ୟାନ ରହିବା ଉଚିତ । କେବେହେଁ ରାଷ୍ଟ୍ରର କ୍ଷତି କରି ନିଜ ଲାଭ ଉଠାଇବାର ଚେଷ୍ଟା ନହେଉ ।" ଏପରି ଲାଭ ଲୋଭରୁ ଏକାନ୍ତ ନିବୃତ୍ତ ହେବା ଉଚିତ । ରାଷ୍ଟ୍ରର ଜୟଗାନ ଓ ଜୟଯାତ୍ରାରେ ଆମ୍ଭେମାନେ ଆନନ୍ଦ ଅନୁଭବ କରିବା ଦରକାର । ପ୍ରତିଦିନ ଆତ୍ମ ସମୀକ୍ଷା କରି ପ୍ରତ୍ୟେକଙ୍କର କର୍ତ୍ତବ୍ୟ ସ୍ଥିର କରିବାକୁ ହେବ । ରାଷ୍ଟ୍ରୀୟ ଜୀବନରେ ଏହାହିଁ କର୍ତ୍ତବ୍ୟ ।

ରାଷ୍ଟ୍ରୀୟ ଭାବନାର ପୋଷକ ଭାବରେ ଆମ ଜୀବନକୁ ଗଠନ କରିବା ପାଇଁ ଆମେ ଋକ୍ ବେଦର ଉପଦେଶ ଗ୍ରହଣ କରିବା । ସେଥିରେ ଅଛି "ନିଜର ଶରୀର, ମନ, ବୁଦ୍ଧି ଉପରେ ପୂର୍ଣ୍ଣ ରୂପରେ ସ୍ୱାଧୀନତା ପ୍ରାପ୍ତ କରିବା ହେଉଛି ସ୍ୱରାଜ୍ୟ । ଏହି ସ୍ୱରାଜ୍ୟର ଅଧିକାରୀ ହୋଇପାରନ୍ତି ଜିତେନ୍ଦ୍ରିୟ ଲୋକମାନେ । ଜିତେନ୍ଦ୍ରିୟ ହେଉଛନ୍ତି ସେ ଯେ ମିତବଦ୍ ବ୍ୟବହାର କରନ୍ତି ଓ ଯାହାଙ୍କ ଦୃଷ୍ଟି ବ୍ୟାପକ ଓ ଯେ ସବୁ ପ୍ରକାର ଯୋଗ୍ୟ ଅଟନ୍ତି ।" ଏହି ଯୋଗ୍ୟତା ଆମକୁ ଅର୍ଜନ କରିବାକୁ ପଡ଼ିବ । ଆମକୁ ସ୍ମରଣ କରିବାକୁ ହେବ ଯେ ଏହି ଯୋଗ୍ୟତା ଅର୍ଜନରୁ ଆମ ପାଇଁ ସ୍ୱରାଜ୍ୟର ପ୍ରାପ୍ତି । ମହାତ୍ମା ଗାନ୍ଧୀ ଜାତୀୟ ସଂଗ୍ରାମର କର୍ଣ୍ଣଧାର ଭାବରେ ଦେଶର ପୁନର୍ଗଠନରେ ଏହି ଦୃଷ୍ଟି ନିଜେ ରଖିଥିଲେ ଓ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପନ କରିଥିଲେ । ଏ ବିଷୟରେ କେବଳ ସ୍ୱାଧୀନ ଦେଶରେ ଜନ୍ମଗ୍ରହଣ ହିଁ ଆମ ପାଇଁ ଶେଷ କଥା ବା ଏକମାତ୍ର ବିଷୟ ନୁହେଁ । ରାଷ୍ଟ୍ରଚିନ୍ତନ ଆମେ କରୁଛୁ କି ? ରାଷ୍ଟ୍ରୀୟ ଚେତନାରେ ଆମେ ଅନୁପ୍ରାଣିତ ହେଉଛୁ କି ? ଏହି ଦୃଷ୍ଟିରେ ଆମ ପ୍ରସ୍ତୁତି କ'ଣ ?

ରାଷ୍ଟ୍ରୀୟତା ପୋଷକ ଯୋଗ୍ୟତାର ଲକ୍ଷଣ କ'ଣ ହୋଇପାରେ ? ଋକ୍‌ବେଦ ଦୁଇଟି ସୂକ୍ତିରେ ଉତ୍ତର ଦେଇଛନ୍ତି । ଗୋଟିଏ ହେଉଛି, "ହେ ମନୁଷ୍ୟ ! ତୁମ ବିଶ୍ୱର ଏକ ସଦୃଶ ହେଉ, ତୁମର ସଭାସମିତି ଏକ ରୂପରେ ବଦ୍ଧ ହେଉ, ତୁମର ଚିନ୍ତନ ଏକତ୍ର ହେଉ ।" ଅନ୍ୟ ସୂକ୍ତିଟି ହେଉଛି, "ହେ ମନୁଷ୍ୟ ! ତୁମେ ଏକ ସଙ୍ଗରେ ଚାଲ । ପରସ୍ପର ବିରୋଧରେ ଚାଲ ନାହିଁ । ସମସ୍ତଙ୍କ ମନ ଏକ ସଦୃଶ ଜ୍ଞାନ ପ୍ରାପ୍ତ ହେଉ ।" ଏଠାରେ ଏହା ଲକ୍ଷ୍ୟ କରିବା ଯେ ଉଲ୍ଲିଖିତ ଦୁଇଟି ସୂକ୍ତି ପରସ୍ପର ପରିପୂରକ ଓ ମନୁଷ୍ୟ ପ୍ରତି ଉଦ୍ଦିଷ୍ଟ । ଆହୁରି ମଧ୍ୟ ବେଦ

ପ୍ରୋଜ୍ଜ୍ୱଳ ସାରସତ୍ୟ ସୂଚିତ କରେ ଯେ ମନୁଷ୍ୟ ଯେ ରାଷ୍ଟ୍ରୀୟ ଏହା ନୁହେଁ ଯେ ରାଷ୍ଟ୍ରାତୀତ । ରାଷ୍ଟ୍ରୀୟତା ଓ ବିଶ୍ୱ ମାନବିକତା ମଧ୍ୟରେ ଦ୍ୱନ୍ଦ୍ୱ ନାହିଁ, ଅଛି ସହଯୋଗିତା ଓ ସମ୍ପ୍ରସାରିତତା । ସୀମା ଭିତରେ ଅସୀମର ଦର୍ଶନ । ଆକାର ମଧ୍ୟରେ ଅଣାକାରର ଉପଲବ୍ଧି । ପ୍ରକୃତରେ, ରାଷ୍ଟ୍ରୀୟତା ପୋଷାକ ଯୋଗ୍ୟତାର ଲକ୍ଷଣ ହେଉଛି ମାନବିକ ଚିନ୍ତା, ଚିନ୍ତନ ଓ ଚେତନ । ଅନ୍ୟ କଥାରେ କହିଲେ, ଏହା ହେଉଛି ମାନବବାଦୀ ବିଶ୍ୱର । ବଡ଼ିମାରେ ବାନ୍ଧି ନହୋଇ ଉନ୍ମୁକ୍ତ ମାନବିକ ଦର୍ଶନକୁ ଆଦରି ନେବା ।

କଣ ଅଛି ? କ'ଣ ହେଲା ? ଆମେ କାହିଁକି ସାଂସ୍କୃତିକ ଦେଉଳିଆ ହେଉଛୁ ? ପରାଧୀନତାର ବିଷମୟ ପରିଣତି ବୋଲି ଦୋଷ ଦେବାର ସମୟ ଅତିବାହିତ ହୋଇଯାଇଛି । ଖରାଦିନର ସୁଅ ନଦୀର ସୁଅ ଦେଖାଯାଏ ନାହିଁ । ଏହା ନଈବାଲି ତଳେ ଲୁଚିଯାଏ । ବାଲି ଚିରି ଲୋକେ ପାଣି ଛେଦି ନିଅନ୍ତି । ଆମ ସଂସ୍କୃତିର ସୁଅ ଶୁଖିଛି । ଅଦେଖା ଅଶୁଣା ସେ ସୁଅ । ଧାରକୁ ଧରି ପାରୁନାହିଁ । ସୁତରାଂ କୁଡ଼ିକଣ୍ଠି ହେଉଛୁ । ସଂସ୍କୃତି ନାଁରେ ଯୋଗାଡ଼ିଆ ଆଡମ୍ବରବାଜୀ ମାରୁଛୁ । ସାଜସଜ୍ଜା କରିପକାଉଛୁ । ଆମକୁ ଚିହ୍ନୁନାହିଁ । ଲୋକ ଶକ୍ତିକୁ ଠାବକରି ପାରୁନାହିଁ । ଅର୍ଥହାନି ଓ ଦେହପୀଡ଼ା ସହୁଛୁ । ସମାଜର ପୁନର୍ଗଠନ କାହିଁ ? ସେଥିପାଇଁ ଆଗରେ ଲୋକ ସଙ୍ଗରେ କାମ କିଏ କରୁଛି ? ସମସ୍ତଙ୍କର ହାକିମି, ହୁକୁମ ଓ ହସ୍ତସନ୍ତ । କେତେ ଲୋକଙ୍କ ପାଇଁ ପୈକାଳି ସେ ଯୋଗେବ ? ହାତୀ ନାହିଁ, ଘୋଡ଼ା କାହିଁ ? ସବୁ କାଗଜରେ । ସହର ଓ ହଳକଟ ଭିତରେ ନାନା କୁସଂସ୍କାର ବେଶ୍ ଜବର ଚେର ଭିଡ଼ିଛି । ଜାତି, କୁଳର ପାରମ୍ପରିକ ଶ୍ରେଷ୍ଠତା ଆମ ମୂଲ୍ୟବୋଧ ଓ ସାଂସ୍କୃତିକ ଚେତନାର ବିକାଶକୁ ଉପେକ୍ଷା ନେଉନାହିଁ । ବିଷ ଔଷଧ ରୂପରେ ଚଳାଯାଉଛି । କୀଟ ମରିବା ତ ଦୂରର କଥା, ମୂଳରୁ ଗଛ ମରୁଛି । ଅପସଂସ୍କୃତି ବ୍ୟାପୁଛି । ଲୋକ ସଂସ୍କୃତି ହେଉନାହିଁ, ହେଉଛି ଲୌକିକ ଅପସଂସ୍କୃତି ।

ଶ୍ରୁତି ନୀତିରେ କୁହାଯାଇଛି—

କର୍ମଶୀଳସ୍ୟ ଗୁଣାଃ ପ୍ରକ୍ଷ୍ୟାଃ ତଥା ଜାତିକୁଳେ ନହି
ନ ଜାତ୍ୟାଃ ନ କୁଳେ ନୈବ ଶ୍ରେଷ୍ଠତ୍ୱ ପ୍ରତିପଦ୍ୟତେ ।

କର୍ମ, ଗୁଣ ଓ ଆଚରଣକୁ ଆଧାରିତ କରି ଶ୍ରେଷ୍ଠତା ପ୍ରତିପାଦନ କରିବା ଉଚିତ । ଅଥର୍ବ ବେଦ ମଧ୍ୟ ସ୍ୱୀକୃତି ଦିଅନ୍ତି ।

"ଜନଂ ବିଭ୍ରତୀ ବହୁଧା ବିବାଚସଂ ନାନା ଧର୍ମାଣଂ ପୃଥିବୀ ଯଥୌକସଂ ।"

ବହୁ ଭାଷାଭାଷୀ ଓ ବହୁ ମତାବଲମ୍ବୀ ଲୋକଙ୍କୁ ଗୋଟିଏ ପରିବାରର ଲୋକଙ୍କ ପରି ପୃଥିବୀ ଧାରଣ କରେ । ଏହି ଦେଶର ଭିନ୍ନ ବିଶ୍ୱାସବନ୍ତ ଓ ନାନା କର୍ତ୍ତବ୍ୟରେ ରତ ବ୍ୟକ୍ତି ଅଛନ୍ତି । ଏମାନଙ୍କ ମଧ୍ୟରେ ସଦା ସଦ୍ଭାବ ଓ ସହଯୋଗୀ ଭାବ ରହିଛି । ତଥାପି ବିଚ୍ଛିନ୍ନତାବାଦ ଓ ବିଭେଦପନ୍ଥୀ ଆମକୁ ଛିନ୍ନଭିନ୍ନ କରି ନେଉଛି । ସାମ୍ପ୍ରଦାୟିକବାଦ ଓ ଅସନ୍ତୋଷର ନିଆଁ ଜଳୁଛି । ରାଜନୀତିର ମଦବାହିନୀ ହୋଇ ଏ ସବୁ ଉଗ୍ରବାଦରେ ପରିଣତ ହେଉଛି । ଦେଶ ଓ ବିଶ୍ୱ ବିଶ୍ୱର ଏବଂ ବ୍ୟବସ୍ଥାକୁ ଆମେ ସମ୍ମାନ ଦେଉନାହିଁ । ସଂହତି ଓ ସହନଶୀଳତା ବ୍ୟାହତ ଓ ବିଖଣ୍ଡିତ ହେଉଛି । ଏକତା ଏବଂ ସଂହତାର ଧ୍ୱନି ପ୍ରତ୍ୟେକ ଭାରତୀୟ ଭାଷାରେ ଗୁଞ୍ଜରିତ ହୋଇଛି । ଯୁଗେ ଯୁଗେ ଭାରତୀୟ ଭାବନା ଓ ଦର୍ଶନରେ ବସୁଧୈବ କୁଟୁମ୍ବକମ୍‌ର ଧ୍ୱନି ନୈମିତ୍ତିକ ନୁହେଁ । ଅନ୍ୟତମ ସ୍ମରଣୀୟ ଉଦାହରଣ ହେଉଛି ସୁବ୍ରହ୍ମଣ୍ୟମ୍ ଭାରତୀଙ୍କ କାଳଜୟୀ ରଚନାରୁ ନିମ୍ନ କେତୋଟି ପଦ :

"ବାର ବାର ହଁ ବାରବାର
ଭାରତ ଝୁଁକି ବନ୍ଦନା କରେଙ୍ଗେ
ହମ୍ ବନ୍ଦେ ମାତରଂ କହେଙ୍ଗେ ।

× ×

ଉଚ୍ଚନୀଚ କା ଭେଦ ଭୁଲାକର
ଜାତି ଧର୍ମ କା ଦମ୍ ନ ଭରେଙ୍ଗେ
ହମ ବନ୍ଦେ ମାତରଂ କହେଙ୍ଗେ ।

ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ଅଛୁଆଁଣ ଭେଦ ଭୁଲି ବିଭେଦ ମଧ୍ୟରେ ଅଭେଦତ୍ୱର ଉପଲବ୍ଧି ହେଉଛି ଆମର ଜାତୀୟ ଚରିତ୍ର । ସେଥିପାଇଁ ସତ୍ୟ ନିଷ୍ଠା, ପରସ୍ପର ବିଶ୍ୱାସ, ନ୍ୟାୟ ବ୍ୟବହାର, କର୍ତ୍ତବ୍ୟଦକ୍ଷତା, ସହନଶକ୍ତି, ଜ୍ଞାନ ବିଜ୍ଞାନ, ଆଦରଭାବ, ପରସ୍ପର ଏକତା ଓ ଦୀନହୀନର ସହାୟତା ଦ୍ୱାରା ହିଁ ରାଷ୍ଟ୍ରୀୟତାର ବିକାଶ କରାଯାଇପାରେ ।

ପରିଶେଷରେ ରାଷ୍ଟ୍ରୀୟ ମମତା ଓ ଚରିତ୍ରର ଯୁଗୋଚିତ ଏବଂ ଆବଶ୍ୟକତା ଅନୁରୂପ ବିକାଶ କରିବା ଉଦ୍ଦେଶ୍ୟରେ ନିମ୍ନ କେତୋଟି କାର୍ଯ୍ୟକ୍ରମର ସୂଚନା ଦିଆଯାଇପାରେ :

(୧) ଆମ ଦେଶରେ ଶିକ୍ଷା ଏକ ଜୀବନବ୍ୟାପୀ କାର୍ଯ୍ୟକ୍ରମରେ ପରିଣତ ହୋଇନାହିଁ । ଏପରି ଅନେକ ଅଛନ୍ତି ଯେଉଁମାନେ ସମ୍ବିଧାନ ସମର୍ଥିତ ଶିକ୍ଷାର ମୌଳିକ ଅଧିକାରରୁ ଏ ପର୍ଯ୍ୟନ୍ତ ବଞ୍ଚିତ । ଜନସମାଜର ଦୁଇ ତୃତୀୟାଂଶ ବ୍ୟକ୍ତି ଏବଂ ଗ୍ରାମ ତଥା ଆଦିବାସୀ ଅଞ୍ଚଳରେ ତତୋଧିକ ନରନାରୀ ନିରକ୍ଷରତାର କଳଙ୍କରୁ ମୁକ୍ତ ହୋଇପାରି ନାହାନ୍ତି । ଏପରି ସ୍ଥଳରେ ରାଷ୍ଟ୍ରୀୟ ଚିନ୍ତନ ଓ ଚେତନାର ବିକାଶ ସାଧିତ ହେବ କିପରି ? ଯେଉଁମାନେ ଶିକ୍ଷା ସୁଯୋଗ ଭୋଗ କରି ଭାଗ୍ୟବାନ, ସେମାନଙ୍କ ମଧ୍ୟରୁ ଅନେକ ନିଜ ପାଇଁ ଯେତେ ସଚେତନ ଦେଶ ପାଇଁ ସେତେ ନୁହନ୍ତି । ଜାତୀୟ ଚରିତ୍ରର ବିକାଶ ପାଇଁ ଶିକ୍ଷା ଅନିବାର୍ଯ୍ୟ ଓ ଶିକ୍ଷାର ସାର୍ବଜନୀନୀକରଣ ତଥା ନିରକ୍ଷରତା ଦୂରୀକରଣ ପାଇଁ ଯେଉଁ ଜାତୀୟ ଶପଥ ନିଆଯାଉଛି ଏହାକୁ ପାଳନ କରିବା ଆମର କର୍ତ୍ତବ୍ୟ ।

(୨) ଆଧ୍ୟାତ୍ମିକତା ଆଧାରିତ ଓ ପରସ୍ପର ସମନ୍ୱୟୀ ଏବଂ ସର୍ବାଙ୍ଗୀଣ ପୂର୍ଣ୍ଣାଙ୍ଗ ବ୍ୟକ୍ତି ଏବଂ ସମାଜ ଗଠନ ପାଇଁ ଶିକ୍ଷା ଅଭିପ୍ରେତ ହେବା ଉଚିତ । ବ୍ୟକ୍ତିଗତ ଉତ୍କର୍ଷ ସାଧନ ଆମର ଯେପରି ଧ୍ୟେୟ ହୋଇଛି ସାମାଜିକ ତଥା ସାମଗ୍ରିକ ଦାୟିତ୍ୱ ବହନ ସେପରି ଅବହେଳିତ ଓ ଉପେକ୍ଷିତ ହେଉଛି । ଆମ ଲାଳନ ପାଳନ, ଉନ୍ନୟନ, ସ୍ୱାଭିମାନ, ଶିକ୍ଷାଦୀକ୍ଷା ଆଦିରେ 'ସର୍ବଜନ ହିତେଚ୍ଛା'ଟିକୁ ଭୁଲିଯାଉଛି । ୧୯୬୬ ମସିହାରେ କୋଠାରୀ କମିଶନ୍ ଶିକ୍ଷାର ପ୍ରସାରକୁ ସାମୟିକ ଭାବରେ ଅଟକାଇ ଗୁଣାତ୍ମକ ବିକାଶ ଉପରେ ଅଧିକ ଧ୍ୟାନ ଦେବାକୁ ସୁପାରିଶ କରିଥିଲେ । ସମାଜ ଏହାକୁ ଶୁଣିଲେ ନାହିଁ ଓ ଶିକ୍ଷକମାନେ ଏଥିରେ ଉଦ୍‌ବୁଦ୍ଧ ହେଲେ ନାହିଁ । ବର୍ତ୍ତମାନ ଜାତୀୟ ସଙ୍କଟ ଓ ଏ ବେଳରେ ଆମକୁ ଉଭୟ ପ୍ରସାର ଓ ବିକାଶ ଉପରେ ସମୁଚିତ ଦୃଷ୍ଟି ଦେବାକୁ ପଡ଼ିବ । ୧୯୮୬, ଜାତୀୟ ଶିକ୍ଷାନୀତି ଏ ବାବଦରେ ଅନେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଦେଇଛନ୍ତି । ଏହା ଆମ ପାଇଁ ଆହ୍ୱାନ ଏବଂ ଜାତୀୟ ସଙ୍କଟରୁ ଅଧିକ ବଳିଷ୍ଠ ନକରି ରାଷ୍ଟ୍ରୀୟ ସୁଦୃଢ଼ ଓ ଗୌରବ ଆମର ଧ୍ୟେୟ ହେଉ ।

(୩) ଜାତୀୟ ସଙ୍ଗୀତ, ଜାତୀୟ ପତାକା, ପ୍ରତୀକ, ରାଷ୍ଟ୍ରଭାଷା ଆଦିର ଗୌରବାବହ ଭାବମୂର୍ତ୍ତି ରଖିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ପବିତ୍ର ଚେତନା ପ୍ରକାଶ ପାଇବା ଉଚିତ । ଜାତୀୟ ଅନୁଷ୍ଠାନଗୁଡ଼ିକ ଆମର ଗର୍ବ ଓ ସେଥିପାଇଁ ବ୍ୟକ୍ତିଗତ, ଦଳୀୟ ଓ ଗୋଷ୍ଠୀଗତ ସ୍ୱାର୍ଥ ଓ ବଡ଼ିମାକୁ ଉଭାଇଛି ଦେବା ସର୍ବଦା କରଣୀୟ ।

(୪) ସାର୍ବଜନୀନ ସାଂସ୍କୃତିକ ତଥା ମାନବିକ ମୂଲ୍ୟବୋଧ ଆମ ଆଚରଣର ଅଙ୍ଗୀଭୂତ ହେବା ଉଚିତ । ଗଣମାଧ୍ୟମ, ଶିକ୍ଷାୟତନ ଆଦିରେ ଏସବୁ ବସ୍ତୁନିଷ୍ଠ ଭାବରେ ପ୍ରତିଫଳିତ

ହେବା ଉଚିତ । ବ୍ୟକ୍ତି ନିର୍ବିଶେଷରେ ଓ ବ୍ୟକ୍ତି ଜୀବନରେ ସକଳ ବିଭାଗରେ ଏ ସବୁ ମୂଲ୍ୟବୋଧ ଆମକୁ ପ୍ରଭାବିତ କରିବା ଉଚିତ । ଉନ୍ନୟନ ଓ ବିକାଶ ପ୍ରକ୍ରିୟାର ମୌଳିକ ସୂତ୍ର ଏହି ଧାରା ଅନୁସରଣ କଲେ ଏହାର ମୌଳିକତା ରହିବ ଓ ଲୋକଙ୍କ ଦ୍ୱାରା ଆଦୃତ ହେବ । ଏଥିରେ ଜଡ଼ିତ ସକଳ କର୍ମୀ, କର୍ମଚାରୀ ଓ କର୍ଣ୍ଣଧାର ବଡ଼ିମା ଛାଡ଼ି ସେବା, ସମସ୍ୟା ଓ ରାଷ୍ଟ୍ର ସଚେତନ ହେବା ଦରକାର । କୁସଂସ୍କାର ଓ ଧର୍ମାନ୍ଧତାରୁ ସର୍ବତୋଭାବରେ ମୁକ୍ତ ହେବେ । "ଅହଙ୍କାର ବିମୂଢ଼ାତ୍ମା କର୍ତ୍ତାହମ୍ ଇତି ମନ୍ୟତେ ।" ଏଥିରୁ ଶିକ୍ଷା ଗ୍ରହଣ କରିବେ । ନରର ସେବା ନାରାୟଣ ସେବା ବୋଲି ଉଦ୍‌ବୁଦ୍ଧ ହେବେ ।

(୫) ଜାତୀୟ ପର୍ବପର୍ବାଣୀ ଓ ପୁଣ୍ୟ ଦିବସରେ ଦଳମତ, ଧର୍ମ, ଜାତି ଆଦିର ଊର୍ଦ୍ଧ୍ୱରେ ରହି ପାଳନ କରାଯିବ । ଆନ୍ତର୍ଜାତୀୟ ଓ ରାଷ୍ଟ୍ରୀୟ ଭାବନାରେ ମନୀଷୀମାନଙ୍କୁ ସାତ୍ତ୍ୱିକ ମନରେ ଶିକ୍ଷାପ୍ରଦ ଭାବରେ ସ୍ମରଣ କରାଯିବ ।

(୬) ଧର୍ମ ପ୍ରାଣୀ ମାତ୍ରକୁ ଧାରଣ କରେ, ଓ ଏକତ୍ର କରେ । ଯେଉଁମାନେ ହିଂସା ଓ ଘୃଣା କରନ୍ତି ସେମାନେ କେବେହେଁ ଧାର୍ମିକ ନୁହନ୍ତି । କିନ୍ତୁ ସମ୍ପ୍ରଦାୟ ଆମକୁ ପୃଥକ କରେ ଓ ଆମ ମଧ୍ୟରେ ପ୍ରାଚୀର ସୃଷ୍ଟି କରେ । ଧର୍ମ ହେଉଛି ପ୍ରେମ ଓ ଏକତାର ମାର୍ଗ, ଅଥଚ ସମ୍ପ୍ରଦାୟ ରାଷ୍ଟ୍ରୀୟ ଏକତା ବିରୋଧୀ । ତେଣୁ ଆମେ ନିଜ ନିଜ ଧର୍ମକୁ ଆଦର କରି ପାଳନ କରିବା ଓ ଆଚରଣ କରିବା । ଏହା ଫଳରେ ଆମେ ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକ ଓ ସାମ୍ୟବାଦୀ ରାଷ୍ଟ୍ରର ନାଗରିକ ହୋଇପାରିବା ।

(୭) ଜନ ଚେତନା ଓ ଜାତୀୟ ଚିନ୍ତନ ଏବଂ ଚେତନା ପାଇଁ ଜନଜାଗୃତି ଆବଶ୍ୟକ । ଏଥିପାଇଁ ଜନ ଆନ୍ଦୋଳନ ସୃଷ୍ଟି କରାଯିବା ଉଚିତ । ଚିନ୍ତନଶୀଳ ବିଦ୍ୱତଗୋଷ୍ଠୀ ନିଜ ନିଜ ପରିସର ମଧ୍ୟରେ ଜାତୀୟ ଚରିତ୍ର ବିକାଶ ପାଇଁ କାର୍ଯ୍ୟ କରିବା ଦରକାର ।



"ଆମକୁ ଆନନ୍ଦ ଦେଉଥିବା ବଣଜଙ୍ଗଲର ଅସଂଖ୍ୟ ଜୀବଜନ୍ତୁଙ୍କୁ ଆମେ ବନ୍ୟପ୍ରାଣୀ ବୋଲି କହୁ । ସଭ୍ୟତା ଓ ସଂସ୍କୃତି ସତ୍ତ୍ୱେ ବ ଆଜିର ମଣିଷ ଏହି ହିଂସ୍ର ବନ୍ୟଜନ୍ତୁଙ୍କଠାରୁ ଅଧିକ ମାରାତ୍ମକ । ଜଙ୍ଗଲରେ ବାସକରୁଥିବା ଅସଂଖ୍ୟ ପ୍ରାଣୀଙ୍କର ସଂସ୍ପର୍ଶ ମଣିଷର ଜୀବନକୁ ସରସ ଓ ମଧୁମୟ କରିଛି । ତେଣୁ କ୍ରମେ ଲୋପ ପାଇ ଯାଉଥିବା ବନ୍ୟଜନ୍ତୁଙ୍କର ରକ୍ଷଣାବେକ୍ଷଣ ପାଇଁ ଦେଶରେ ଯେତେ ବେଶୀ ପଶୁ ଓ ପକ୍ଷୀମାନଙ୍କ ଲାଗି ଆଶ୍ରୟସ୍ଥଳୀ ଖୋଲାଯାଇ ପାରେ ସେତେ ଭଲ ।"

—ଜବାହାରଲାଲ ନେହେରୁ

# ଶିଶୁ ସ୍ୱାସ୍ଥ୍ୟର ସୁରକ୍ଷା

ଡାକ୍ତର ପବିତ୍ର କୁମାର ମୁଖାର୍ଜୀ

ଶିଶୁମାନେ ହିଁ ଦେଶର ଭବିଷ୍ୟତ । ଶିଶୁମାନଙ୍କ ସ୍ୱାସ୍ଥ୍ୟର ଯତ୍ନ ନେଲେ ସେମାନେ ବଡ ହୋଇ ସୁସ୍ଥ ସବଳ ନାଗରିକ ହୋଇପାରିବେ । ସେଥିପାଇଁ ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ଶିଶୁ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ସରକାର ତଥା ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ କାର୍ଯ୍ୟ କରୁଛନ୍ତି । ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା, ୟୁନିସେଫ୍ ଓ କେୟାର ପ୍ରଭୃତି କେତେକ ଆନ୍ତର୍ଜାତିକ ଅନୁଷ୍ଠାନ ମଧ୍ୟ ଶିଶୁ ସ୍ୱାସ୍ଥ୍ୟର ସୁରକ୍ଷା ନିମନ୍ତେ ଆର୍ଥିକ ସାହାଯ୍ୟ ଓ ସକ୍ରିୟ ସହଯୋଗ କରୁଛନ୍ତି ।

ଆମ ଦେଶ ସ୍ୱାଧୀନ ହେବା ବହୁବର୍ଷ ପରେ ଯାଇ ମା' ଓ ଶିଶୁମାନଙ୍କ ସ୍ୱାସ୍ଥ୍ୟ ଉପରେ ଗୁରୁତ୍ୱ ଆରୋପ କରାଗଲା । ଏବେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଓ ସହରାଞ୍ଚଳରେ ପ୍ରସବୋତ୍ତର କେନ୍ଦ୍ରଗୁଡ଼ିକରେ ମା ଓ ଶିଶୁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଉପରେ ବିଶେଷ ଗୁରୁତ୍ୱ ଓ ପ୍ରାଧାନ୍ୟ ଦିଆଯାଉଛି । ୧୯୭୭ ମସିହାରେ ମାତୃମଙ୍ଗଳ ଓ ଶିଶୁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ପରିବାର ନିଯୋଜନ ଯୋଜନା ସହିତ ସାମିଲ ହେବାପରେ ଏହାକୁ ପରିବାର କଲ୍ୟାଣ ଯୋଜନା ବୋଲି କୁହାଗଲା । ଆଜି ପରିବାର କଲ୍ୟାଣ ଯୋଜନା ଭିତରେ ମାତୃମଙ୍ଗଳ ଓ ଶିଶୁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମକୁ ଅନ୍ତର୍ଭୁକ୍ତ କରାଯାଇ ଏହି ବ୍ୟବସ୍ଥାକୁ ସୁଦୂର ଗ୍ରାମାଞ୍ଚଳକୁ ସଂପ୍ରସାରିତ କରାଯାଉଛି । ରାଜ୍ୟର ସମତଳ ଅଞ୍ଚଳରେ ପ୍ରତି ୫ ହଜାର ଲୋକଙ୍କ ପାଇଁ ଗୋଟିଏ ଉପକେନ୍ଦ୍ର ରହିଥିବା ସ୍ଥଳେ ଆଦିବାସୀ ଓ ପାହାଡ଼ିଆ ଅଞ୍ଚଳରେ ପ୍ରତି ୩ ହଜାର ଲୋକଙ୍କ ପାଇଁ ଗୋଟିଏ ଲେଖାଏଁ ଉପକେନ୍ଦ୍ର ପ୍ରତିଷ୍ଠା କରାଯାଉଛି । ଉପକେନ୍ଦ୍ରଗୁଡ଼ିକରେ ନିଯୁକ୍ତ ଥିବା ମହିଳା ସ୍ୱାସ୍ଥ୍ୟ କର୍ମୀମାନଙ୍କର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ହେଲା– ସେହି ଅଞ୍ଚଳର ମା ଓ ଶିଶୁମାନଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା । ଉକ୍ତ ଦାୟିତ୍ୱ ସୁରୁଖୁରିରେ ତୁଲାଇବା ପାଇଁ ସେମାନଙ୍କୁ ଉପଯୁକ୍ତ ତାଲିମ ଦିଆଯାଇଥାଏ ।

ପୃଥିବୀର ଉନ୍ନତ ଦେଶ ତଥା ଆମ ଦେଶର କେତେକ ସ୍ୱଚ୍ଛଳ ରାଜ୍ୟର ଶିଶୁ ମୃତ୍ୟୁହାର ତୁଳନାରେ ଆମ ରାଜ୍ୟର ଶିଶୁ ମୃତ୍ୟୁହାର ଅପେକ୍ଷାକୃତ ଅଧିକ । ଉଦାହରଣ ସ୍ୱରୂପ – ଭାରତବର୍ଷର ହାରାହାରି ଶିଶୁ ମୃତ୍ୟୁହାର ହଜାରେ ଶିଶୁ ପିଛା ୯୫ ଥିବାବେଳେ ଆମ ଓଡ଼ିଶାରେ ଏବେ ଶିଶୁ ମୃତ୍ୟୁହାର ହେଉଛି ହଜାରେ ଶିଶୁ ପିଛା ୧୨୬ ।

ଏଥିପାଇଁ ଆମର ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଓ ସ୍ୱାସ୍ଥ୍ୟଗତ କାରଣଗୁଡ଼ିକ ଦାୟୀ । ଏହାଛଡ଼ା ଲୋକଙ୍କ ଭିତରେ ଅନ୍ଧବିଶ୍ୱାସକୁ ସଂସ୍କାର, ଭ୍ରମଧାରଣା ଏବେ ମଧ୍ୟ ବସାବାନ୍ଧି ରହିଛି । ଫଳରେ ସେମାନେ ବିଜ୍ଞାନ ସମ୍ମତ ସ୍ୱାସ୍ଥ୍ୟ ସେବା ବ୍ୟବସ୍ଥାର ଉପଯୋଗ କରିବା ପାଇଁ ଆଗ୍ରହ ପ୍ରକାଶ କରୁନାହାନ୍ତି । ଏହାଛଡ଼ା ଶିଶୁକୁ ଲାଳନ ପାଳନ କରିବାରେ ତ୍ରୁଟି ଓ ମା'ର ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଭୁଲ ଧାରଣା ଯୋଗୁଁ ପରିସ୍ଥିତି ଗୁରୁତର ହୋଇପଡ଼ିଛି । କେବଳ ଆଦିବାସୀ, ହରିଜନ ନୁହନ୍ତି, ଆମ ଭାରତୀୟ ସମାଜରେ ପାରିବାରିକ ଜୀବନରେ ଶିଶୁ, ସ୍ତ୍ରୀ ଓ ମା'ମାନଙ୍କ ପ୍ରତି କେତେକ ଅବହେଳା ରହିଆସିଛି । ପରିବାରରେ ଏଭଳି ଅବହେଳା ଯୋଗୁଁ ଗର୍ଭବତୀ ତଥା ପ୍ରସୂତି ମା'ମାନଙ୍କ ସ୍ୱାସ୍ଥ୍ୟର ଉପଯୁକ୍ତ ଯତ୍ନ ନିଆଯାଉ ନାହିଁ । ଫଳରେ ଅଳ୍ପ ଓଜନ ବିଶିଷ୍ଟ ଶିଶୁ ଜନ୍ମଲାଭ କରୁଛନ୍ତି ଓ ସେମାନେ ଉପଯୁକ୍ତ ଯତ୍ନ, ଖାଦ୍ୟ, ପାନୀୟ ଓ ଚିକିତ୍ସା ଅଭାବରୁ ଜନ୍ମ ହେବାର ବର୍ଷେ ନ ପୂରୁଣୁ ମୃତ୍ୟୁବରଣ କରୁଛନ୍ତି । ପ୍ରତିବର୍ଷ ଜନ୍ମଗ୍ରହଣ କରୁଥିବା ଶିଶୁମାନଙ୍କ ମଧ୍ୟରୁ ପ୍ରତି ୧୦ ଜଣରେ ଜଣେ ଶିଶୁ ତାର ପ୍ରଥମ ଜନ୍ମଦିନ ପାଳିତ ହେବା ପୂର୍ବରୁ ମୃତ୍ୟୁବରଣ କରୁଛି ।

ଆମ ରାଜ୍ୟ ତଥା ଦେଶରେ ଶିଶୁ ମୃତ୍ୟୁର ହାର ଅଧିକ ହେବାର ପ୍ରଧାନ କାରଣଗୁଡ଼ିକ ହେଉଛି – ଛଅଗୋଟି ମାରାତ୍ମକ ସଂକ୍ରାମକ ରୋଗ ଓ ତରଳ ଝାଡ଼ା ଯୋଗୁଁ ଶରୀରରେ ଦେଖା ଦେଉଥିବା ଜଳ ଶୁଷ୍କତା । ଅକାଳରେ ଝଡ଼ିପଡୁଥିବା ଲକ୍ଷଲକ୍ଷ ଶିଶୁମାନଙ୍କୁ ସାଧାରଣତଃ ଧନୁଷ୍ଟଙ୍କାର, ଡିପ୍‌ଥେରିଆ, ହୁପିଂ କାଶ, ପୋଲିଓ, ଯକ୍ଷ୍ମା ଓ ମିଳିମିଳା ରୋଗ ଆକ୍ରମଣ କରିଥାଏ । ଦୁଃଖର ବିଷୟ ଏହି ଯେ ଏହି ସବୁ ସଂକ୍ରାମକ ରୋଗର ପ୍ରତିରୋଧ କରିବା ପାଇଁ ପ୍ରତିଷେଧକ ଟୀକା ବିନା ମୂଲ୍ୟରେ ଯୋଗାଇ ଦିଆଯାଉଥିଲେ ବି ବାପା, ମା'ମାନେ ତାଙ୍କ ପିଲାଙ୍କ ପାଇଁ ଏହି ସୁବିଧାର ଉପଯୋଗ କରୁନାହାନ୍ତି । ଶିଶୁ ସ୍ୱାସ୍ଥ୍ୟ ସମ୍ପର୍କରେ ଆବଶ୍ୟକ ସଚେତନତାର ଅଭାବରୁ ଏସବୁ ଦେଖାଦେଉଛି ।

ଶିଶୁ ସ୍ୱାସ୍ଥ୍ୟ କ୍ଷେତ୍ରରେ ଲାଗି ରହିଥିବା ସମସ୍ୟା ଯେ କେତେ ବ୍ୟାପକ, ତାହା ଅନୁଧ୍ୟାନ କଲେ ଜାଣି ହୁଏ । ଛଅଗୋଟି ସଂକ୍ରାମକ ରୋଗ କବଳରେ ପଡ଼ି ମୃତ୍ୟୁବରଣ କରୁଥିବା ଶିଶୁମାନଙ୍କ ତୁଳନାରେ କେଉଁସବୁ

ରୋଗରେ ଆକ୍ରାନ୍ତ ହୋଇ କୌଣସିମତେ ବଞ୍ଚି ରହୁଥିବା ଶିଶୁଙ୍କ ଅବସ୍ଥା ଅଧିକ ଦୟନୀୟ । ସେଭଳି ଶିଶୁମାନଙ୍କ ଭିତରେ କେତେ ଜଣଙ୍କର ମସ୍ତିଷ୍କ ଅଭିବୃଦ୍ଧି ହୋଇପାରେ ନାହିଁ । ଆଉ କେତେକଙ୍କ ଶରୀରରେ ପକ୍ଷାଘାତ ଓ ଫୁସ୍‌ଫୁସ୍‌ଜନିତ ରୋଗ ଦେଖାଯାଏ । ଏହାଛଡ଼ା ଏହି ରୋଗ ଭୋଗ କରିଥିବା ଅନେକ ଶିଶୁ ଅନ୍ଧ, ଛୋଟା ହୋଇ ସାରା ଜୀବନ ଅକର୍ମଣ୍ୟ ହୋଇ କଷ୍ଟ ଭୋଗ କରନ୍ତି ଓ ପରିବାର ତଥା ସମାଜ ଉପରେ ବୋଝ ହୋଇ ରହନ୍ତି । ଦୁର୍ଭାଗ୍ୟର କଥା ଯେ ଯେଉଁ ରୋଗଗୁଡ଼ିକୁ ଅତି ସହଜରେ ପ୍ରତିରୋଧ କରାଯାଇ ପାରିଥାନ୍ତା, ମୁଖ୍ୟତଃ ପିତାମାତାଙ୍କ ଅବହେଳା ଯୋଗୁଁ ତାହା ଏଭଳି ଗୁରୁତର ଅବସ୍ଥା ସୃଷ୍ଟି କରୁଛି ।

ଏଭଳି ସ୍ୱାସ୍ଥ୍ୟ ସମସ୍ୟାକୁ ଆଖି ଆଗରେ ରଖି ବିଧିବଦ୍ଧ ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତ ହୋଇ ସେ ଅନୁସାରେ କାର୍ଯ୍ୟ ଚାଲିଛି । ୨୦୦୦ ଖ୍ରୀଷ୍ଟାବ୍ଦ ଶେଷ ସୁଦ୍ଧା ଶିଶୁ ମୃତ୍ୟୁର ହାରକୁ ହଜାରେ ଶିଶୁ ପିଛା ୬୦କୁ ହ୍ରାସ କରିବା ପାଇଁ ଜାତୀୟ ଲକ୍ଷ୍ୟ ନିର୍ଦ୍ଧାରଣ କରାଯାଇଛି । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ଯେଉଁ କାର୍ଯ୍ୟକ୍ରମଗୁଡ଼ିକ ଗ୍ରହଣ କରାଯାଉଛି, ସେଗୁଡ଼ିକ ମଧ୍ୟରେ ମାତୃମଙ୍ଗଳ ଓ ଶିଶୁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଉଛି । ଶିଶୁ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ଗର୍ଭାବସ୍ଥାରେ ମା' ସ୍ୱାସ୍ଥ୍ୟର ଯତ୍ନ ନିଆଯାଉଛି । ଗର୍ଭବତୀ ସ୍ତ୍ରୀମାନେ କେଉଁ ଧରଣର ଖାଦ୍ୟ କେତେ ପରିମାଣରେ ଖାଇବା ଉଚିତ ସେ ସମ୍ପର୍କରେ ସେମାନଙ୍କ "ମହିଳାମାନଙ୍କ ପାଇଁ ଜନଶିକ୍ଷା କାର୍ଯ୍ୟକ୍ରମ" (Scheme for Population Education for Women) ମାଧ୍ୟମରେ ବୁଝାଇ ଦିଆଯାଉଛି । ଗର୍ଭଧାରଣ ସମୟରେ ମହିଳାମାନଙ୍କୁ ଧନୁଷ୍ଟଙ୍କାର ଇଞ୍ଜେକ୍‌ସନ୍ ଦୁଇଥର ଦିଆଯାଉଛି । ରକ୍ତହୀନତାର ପ୍ରତିରୋଧ ପାଇଁ ଫଲିଫର୍ ବଟିକା ଗର୍ଭବତୀ ମହିଳାମାନଙ୍କୁ ଯୋଗାଇ ଦିଆଯାଉଛି । ପ୍ରସବ କାର୍ଯ୍ୟ ନିରାପଦରେ ଓ ସ୍ୱାସ୍ଥ୍ୟକର ପଦ୍ଧତିରେ ସମ୍ପାଦନ କରିବା ପାଇଁ ଗ୍ରାମାଞ୍ଚଳର ଧାଈମାନଙ୍କୁ ଆବଶ୍ୟକ ତାଲିମ ଦିଆଯାଉଛି । ତାଲିମ ପରେ ସେମାନଙ୍କୁ ୟୁନିସେଫ୍ ତରଫରୁ ମିଳୁଥିବା Delivery Kit ଯୋଗାଇ ଦିଆଯାଉଛି । ଏ ସମସ୍ତ ଉଦ୍ୟମର ଲକ୍ଷ୍ୟ ହେଉଛି ଗର୍ଭାବସ୍ଥାରେ, ପ୍ରସବ ସମୟରେ ଓ ପରେ ମା' ଓ ଶିଶୁ ମୃତ୍ୟୁର ସଂଖ୍ୟା କମାଇବା ।

ଶିଶୁଟି ଭୂମିଷ୍ଠ ହେବା ପରେ ମା'ର ପ୍ରଥମ କ୍ଷୀର ଦେବା ପାଇଁ ପରିବାରର ବୟସ୍କ ଲୋକଙ୍କୁ ବୁଝାଇ ଦିଆଯାଉଛି । ମା'ର ପ୍ରଥମ କ୍ଷୀରରେ କୋଲୋଷ୍ଟ୍ରମ୍ ନାମକ ମୂଲ୍ୟବାନ ଉପାଦାନ ରହିଛି, ଯାହାକି ଶିଶୁକୁ ରୋଗ ପ୍ରତିରୋଧକ ଶକ୍ତି ପ୍ରଦାନ କରିଥାଏ । ମା' କ୍ଷୀର ଶିଶୁକୁ ଅନ୍ତତଃ ଦୁଇବର୍ଷ ପର୍ଯ୍ୟନ୍ତ ଦେବାପାଇଁ ଲୋକଙ୍କୁ ବୁଝାଇ ଦିଆଯାଉଛି । ଶିଶୁ ପାଇଁ ମା' କ୍ଷୀର ଯେ ସବୁଠାରୁ ଉପାଦେୟ ଖାଦ୍ୟ, ସେ କଥାର ଲିଖିତ ମଧ୍ୟ ବୁଝାଇ ଦିଆଯାଉଛି ।

ମୁଁ ଆଗରୁ କହିଛି ଯେ ଛଅଟି ମାରାତ୍ମକ ସଂକ୍ରାମକ ରୋଗ କବଳରୁ ଶିଶୁକୁ ରକ୍ଷା କରିବା ପାଇଁ ଆମ ପାଖରେ ଫଳପ୍ରଦ ପ୍ରତିଷେଧକ ଟୀକା ରହିଛି । ସେଗୁଡ଼ିକ ହେଲା — ଡି: ପି: ଟି:, ପୋଲିଓ, ବି: ସି: ଜି: ଓ ମିଳିମିଳା । ଜନ୍ମଠାରୁ ବର୍ଷକ ଭିତରେ ଏ ସବୁ ଟୀକା ଶିଶୁକୁ ନିର୍ଦ୍ଦିଷ୍ଟ ସମୟରେ ଦେବାପାଇଁ ବାପା ମା'ମାନଙ୍କୁ ବିଭିନ୍ନ ଗଣମାଧ୍ୟମ ଜରିଆରେ ଅନୁରୋଧ କରାଯାଉଛି । ଟୀକାଗୁଡ଼ିକର ସମସ୍ତ ତାଲିକା ବିଜ୍ଞାପନ ମାଧ୍ୟମରେ ଛପାଯାଉଛି ଓ ପ୍ରଚାରପତ୍ର ଆକାରରେ ବଣ୍ଟା ଯାଉଛି ।

ପରିବାର କଲ୍ୟାଣ ଯୋଜନା ଜରିଆରେ କାର୍ଯ୍ୟକାରୀ ହେଉଥିବା ଟୀକାଦାନ ବ୍ୟବସ୍ଥାକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ସମଗ୍ର ଦେଶରେ "ସାର୍ବଜନୀନ ଟୀକାଦାନ କାର୍ଯ୍ୟକ୍ରମ" କାର୍ଯ୍ୟକାରୀ ହେଉଛି । ୧୯୮୫ ମସିହା ନଭେମ୍ବର ୧୯ ତାରିଖରେ ଆରମ୍ଭ ହୋଇଥିବା ଏହି କାର୍ଯ୍ୟକ୍ରମ ପର୍ଯ୍ୟାୟକ୍ରମେ ସବୁ ଜିଲ୍ଲାକୁ ସମ୍ପ୍ରସାରିତ ହେଉଛି । ଆମ ରାଜ୍ୟର ୧୧ଟି ଜିଲ୍ଲାରେ ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଅଛି । ଅବଶିଷ୍ଟ ଦୁଇଟି ଜିଲ୍ଲା ଯଥା କୋରାପୁଟ ଓ ସୁନ୍ଦରଗଡ଼କୁ ମଧ୍ୟ ୧୯୯୦ ମସିହା ସୁଦ୍ଧା ଏହି କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କରାଯିବାର ବ୍ୟବସ୍ଥା ହେଉଛି ।

ସାର୍ବଜନୀନ ଟୀକାଦାନ କାର୍ଯ୍ୟକ୍ରମ ଜରିଆରେ କେବଳ ବର୍ଷକ ଭିତରେ ଶିଶୁମାନଙ୍କୁ ଅନ୍ତର୍ଭୁକ୍ତ କରାଯାଉଛି । ଜନ୍ମଠାରୁ ବର୍ଷକ ଭିତରେ ୬ଟି ସଂକ୍ରାମକ ରୋଗର ପ୍ରତିଷେଧକ ଟୀକା ଦେବାପାଇଁ ବ୍ୟାପକ ବ୍ୟବସ୍ଥା ହୋଇଛି । ଏହି କାର୍ଯ୍ୟକ୍ରମଟିକୁ ଅଧିକ ଗୁରୁତ୍ୱ ଦେବାପାଇଁ U. I. P. ର ଅନ୍ତର୍ଭୁକ୍ତ କରାଯାଇ ଏହାର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରାଯାଉଅଛି । ଟୀକାଦାନର ମାନବୃଦ୍ଧି ପାଇଁ ଓ ଟୀକାର ଗୁଣାତ୍ମକ ମୂଲ୍ୟକୁ ଅତୁଟ ରଖିବା ପାଇଁ ସୁଚିନ୍ତିତ ଓ ସୁବିସ୍ତୃତ ଶୀତଳ ରକ୍ଷଣ ବ୍ୟବସ୍ଥା ବା Cold Chain System ଗ୍ରହଣ କରାଯାଇଛି ।

ସଂକ୍ରାମକ ରୋଗଜନିତ ଶିଶୁ ମୃତ୍ୟୁ ବ୍ୟତୀତ ଝାଡ଼ାରୋଗ ଯୋଗୁଁ ଶରୀରରେ ଜଳଶୂନ୍ୟତା ବୃଦ୍ଧି ପାଇଲେ ଶିଶୁମାନେ ମୃତ୍ୟୁବରଣ କରନ୍ତି । ଏଭଳି ଅକାଳ ମୃତ୍ୟୁର ପ୍ରତିବିଧାନ ନିମନ୍ତେ ଚିନି, ଲୁଣ ସରବତ ଭଳି ସରଳ ଓ ସହଜରେ ତିଆରି ଦ୍ରବଣ ଶିଶୁକୁ ତରଳ ଝାଡ଼ା ବେଳେ ଦେବା ପାଇଁ ଲୋକଙ୍କୁ ସ୍ୱାସ୍ଥ୍ୟ ଶିକ୍ଷା ଦିଆଯାଉଛି । ଏହାଛଡ଼ା ଏଭଳି ଦ୍ରବଣ ପ୍ରସ୍ତୁତ କରିବା ପାଇଁ ସ୍ୱାସ୍ଥ୍ୟ କେନ୍ଦ୍ର ଓ ଉପକେନ୍ଦ୍ର ଜରିଆରେ O. R. S. Packets ମଧ୍ୟ ଯୋଗାଇ ଦିଆଯାଉଛି । ତରଳ ଝାଡ଼ା ରୋଗର ସରଳ ଚିକିତ୍ସା ପଦ୍ଧତି ସମ୍ପର୍କରେ ବିଭିନ୍ନ ଗଣ ମାଧ୍ୟମ ଜରିଆରେ ବ୍ୟାପକ ଜନ ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ରହିଛି । ମା'ଠାରୁ କ୍ଷୀର ଖାଉଥିବା ଶିଶୁକୁ କ୍ଷୀର ବନ୍ଦ ନ କରିବା ପାଇଁ ମଧ୍ୟ ଲୋକଙ୍କୁ ବୁଝାଇ ଦିଆଯାଉଛି । ଏ ଧରଣ ଶିକ୍ଷାକୁ ଗ୍ରାମାଞ୍ଚଳରେ ପହଞ୍ଚାଇବା ପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମୀ, ଅଙ୍ଗନୱାଡ଼ି କର୍ମୀ ପଞ୍ଚାୟତର ଓ୍ୱାର୍ଡମେମ୍ବରମାନଙ୍କୁ ତାଲିମ ଦିଆଯାଉଛି । ଏହାଛଡ଼ା ଜିଲ୍ଲା ସଦର ମହକୁମା ଡାକ୍ତରଖାନାରେ ମଧ୍ୟ ଏକ ସ୍ୱତନ୍ତ୍ର ପ୍ରଶିକ୍ଷଣ କେନ୍ଦ୍ର ଖୋଲାଯାଇଛି । ତାକୁ କୁହାଯାଉଛି O. R. T. Counter.

ଏସବୁ ବ୍ୟବସ୍ଥା ବ୍ୟତୀତ ନିରାପଦ ଶିଶୁ ଜନ୍ମ ପାଇଁ ମା' ଓ ଶିଶୁ ସ୍ୱାସ୍ଥ୍ୟର ସୁରକ୍ଷା ନିମିତ୍ତ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ Pilot Project ଆକାରରେ ସମ୍ବଲପୁର ଓ କେଉଁଝର ଜିଲ୍ଲାରେ କାର୍ଯ୍ୟକାରୀ କରିବା ପାଇଁ ବ୍ୟବସ୍ଥା ହେଉଛି । ମୋଟ ଉପରେ କହିବାକୁ ଗଲେ ରାଜ୍ୟରେ ଶିଶୁ ମୃତ୍ୟୁ ହାରକୁ କମାଇବା ପାଇଁ ଯଥାସାଧ୍ୟ ଉଦ୍ୟମ ଚାଲୁରହିଛି ।

କିନ୍ତୁ ସକଳ ପ୍ରଚେଷ୍ଟା ସତ୍ତ୍ୱେ ଜନସାଧାରଣଙ୍କ ମନରେ ମୁଖ୍ୟତଃ ପିତାମାତାଙ୍କ ମନରେ ଶିଶୁ ସ୍ୱାସ୍ଥ୍ୟର ସୁରକ୍ଷା ସମ୍ପର୍କରେ ଜନ ଚେତନା ଜାଗ୍ରତ କରିବା କଷ୍ଟକର ହୋଇ ପଡୁଛି । କେବଳ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର କର୍ମଚାରୀମାନଙ୍କ ଦ୍ୱାରା ଏହା ସମ୍ଭବ ନୁହେଁ । ବିଭିନ୍ନ ବିଭାଗର କର୍ମଚାରୀମାନେ ଏଥିରେ ସକ୍ରିୟ ସହଯୋଗ କଲେ ଯାଇ ଏଭଳି ଏକ ମହତ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ସଫଳ ହୋଇ ପାରିବ ।

ପରିବାର କଲ୍ୟାଣ ନିର୍ଦ୍ଦେଶକ, ଓଡ଼ିଶା
ଭୁବନେଶ୍ୱର ।

ସର୍ବେ ଭବନ୍ତୁ ସୁଖିନଃ,
ସର୍ବେ ସନ୍ତୁ ନିରାମୟା ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ,
ମା କଶ୍ଚିଦ୍ ଦୁଃଖଭାକ୍ ଭବେତ୍ ।

# ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିବେଦନ

ଚଳିତ ବର୍ଷ ସେପ୍ଟେମ୍ବର ୫ ତାରିଖ ଗୁରୁଦିବସ ଉପଲକ୍ଷେ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟବାସୀ, ବିଶେଷ କରି ରାଜ୍ୟର ସମସ୍ତ ସିନେମା ଗୃହ ମାଲିକମାନଙ୍କୁ ନିବେଦନ କରିଛନ୍ତି । ନିବେଦନର ପୂର୍ଣ୍ଣ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

"ଅଷ୍ଟାବିଂଶତିତମ ଗୁରୁଦିବସ ଉପଲକ୍ଷେ ଦେଶର ଭବିଷ୍ୟତ ନାଗରିକ ଗଠନ ଦାୟିତ୍ୱରେ ଥିବା ଅଗଣିତ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ମୁଁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

"ପୂଜ୍ୟପୂଜା ଭାରତୀୟ ପରମ୍ପରାର ଏକ ମହାନ୍ ପ୍ରତୀକ । ବୈଦିକ ଯୁଗରୁ ଗୁରୁ ପୂଜାର ଆଦର୍ଶ ଭାରତୀୟ ସଂସ୍କୃତିର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଛି । ଆମ ଦେଶର ସାର୍ବଭୌମତ୍ୱ, ଗଣତନ୍ତ୍ର ଓ ଧର୍ମନିରପେକ୍ଷତାର ଭିତ୍ତିଭୂମିକୁ ସୁଦୃଢ଼ କରିବା ଦିଗରେ ଛାତ୍ର ସମାଜର ଅବଦାନ ଅନସ୍ୱୀକାର୍ଯ୍ୟ । ଛାତ୍ର ସମାଜକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବା ପାଇଁ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଆଦର୍ଶ କର୍ତ୍ତବ୍ୟନିଷ୍ଠା ଛାତ୍ର ସମାଜକୁ ଚିରକାଳ ପାଇଁ ପ୍ରେରଣା ଦେଉଥିବ । ସମାଜରେ ଶିକ୍ଷକମାନଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ସବୁବେଳେ ରହିଛି । ନୂତନ ଜାତୀୟ ଶିକ୍ଷାନୀତିକୁ ସଫଳ କରିବା ଦିଗରେ ମଧ୍ୟ ସେମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

"ଦୁସ୍ଥ ଶିକ୍ଷକମାନଙ୍କୁ ସାହାଯ୍ୟ ଦେବା, ଅକାଳ ମୃତ୍ୟୁବରଣ କରିଥିବା ଅଥବା ଅସ୍ୱାଭାବିକ ପରିସ୍ଥିତିରେ ପଡ଼ି କିମ୍ବା ରୋଗାଗ୍ରସ୍ତ ପୀଡ଼ିତ ରହିଥିବା ଶିକ୍ଷକ ଓ ତାଙ୍କର ପରିବାରବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଦେବା ନିମନ୍ତେ ଏକ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠି ଗଠିତ ହୋଇଛି । ଏହି ପାଣ୍ଠି ନିମନ୍ତେ ସାହାଯ୍ୟ ଦେବା ଏକ ପବିତ୍ର ସାମାଜିକ କର୍ତ୍ତବ୍ୟ ।

"ମୁଁ ରାଜ୍ୟବାସୀଙ୍କୁ ନିବେଦନ କରୁଛି ଯେ ସେମାନେ ଶିକ୍ଷକ ସମାଜର କଲ୍ୟାଣାର୍ଥେ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରନ୍ତୁ । ରାଜ୍ୟର ପ୍ରତ୍ୟେକ ପ୍ରେକ୍ଷାଳୟର ମାଲିକମାନେ ସେମାନଙ୍କ ପ୍ରେକ୍ଷାଳୟରେ ସେପ୍ଟେମ୍ବର ୫ ତାରିଖ ସନ୍ଧ୍ୟାରେ ପ୍ରଦର୍ଶିତ ଚଳଚ୍ଚିତ୍ରର ଟିକଟ ବିକ୍ରୟଲବ୍ଧ ଅର୍ଥ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ଦାନ କରିବା ପାଇଁ ମୁଁ ନିବେଦନ କରୁଛି ।

"ଶିକ୍ଷକ କଲ୍ୟାଣ ପାଣ୍ଠି ପାଇଁ ସଂଗୃହୀତ ଦାନ ନିର୍ଦ୍ଦେଶକ, ମାଧ୍ୟମିକ ଶିକ୍ଷା, ଓଡ଼ିଶା, ଭୁବନେଶ୍ୱରଙ୍କ ନିକଟକୁ ପଠାଇବାକୁ ଅନୁରୋଧ ।"

# ବିବାହ ଆଇନ୍ ଓ ହିନ୍ଦୁ ମହିଳା

ଶ୍ରୀ ବୃନ୍ଦାବନ ପଣ୍ଡା

ହିନ୍ଦୁମାନଙ୍କ ଭାଷାରେ ବିବାହର ଅର୍ଥ ହେଉଛି କନ୍ୟାକୁ ବରଘରକୁ ନେବାର ରୀତି, ଯାହାକି ବର୍ତ୍ତମାନର ହିନ୍ଦୁ ବିବାହ ଆଇନ୍ (କ) ଦ୍ୱାରା ପରିଚାଳିତ । (ଖ) ହିନ୍ଦୁ ବିବାହ ଆଇନଟି ୧୯୫୫ ମସିହାରୁ କାର୍ଯ୍ୟକାରୀ ହୋଇ ୨୯ଟି ଦଫା ମାଧ୍ୟମରେ ହିନ୍ଦୁ ବିବାହ ଓ ଛାଡ଼ପତ୍ର ସମ୍ପର୍କରେ ବିଭିନ୍ନ ବ୍ୟବସ୍ଥା ଲାଗୁ କରାଇବା ସହିତ ହିନ୍ଦୁମାନଙ୍କର ଦ୍ୱିବିବାହ ଅପରାଧ ପାଇଁ ଦଣ୍ଡ ବ୍ୟବସ୍ଥା ଲାଗୁ କଲା । (ଗ) ଏହା ପୂର୍ବରୁ ଯଦିଓ ଭାରତୀୟ ଦଣ୍ଡ ବିଧାନ ଆଇନଟି ୧୯୬୦ ମସିହାରୁ କାର୍ଯ୍ୟକାରୀ ହୋଇ ଦଣ୍ଡିରେ ପ୍ରଥା ୪୯୪ ଧାରା (ଘ) ଓ ୪୯୫ ଧାରା (ଙ) ଅନୁସାରେ ଦ୍ୱିବିବାହ ପାଇଁ ଦଣ୍ଡବିଧାନ କରିଥିଲା ତଥାପି ତାହା ହିନ୍ଦୁମାନଙ୍କ କ୍ଷେତ୍ରରେ ୧୯୫୫ ମସିହା ପର୍ଯ୍ୟନ୍ତ ଲାଗୁ ହୋଇ ନଥିଲା । କାରଣ ହିନ୍ଦୁମାନଙ୍କର ବହୁ ବିବାହ ପାଇଁ କିଛି କଟକଣା ନଥିଲା । ପ୍ରଥମ ଥର ପାଇଁ ୧୯୫୫ ମସିହାର ହିନ୍ଦୁ ବିବାହ ଆଇନ୍ ୫(୧) ଧାରାରେ ଏକ ବିବାହର ଆଇନ୍ ଲାଗୁ ହେଲା । (ଚ) ଯେବେ ୫(୧) ଧାରାକୁ ଲଙ୍ଘନ କରି ଦ୍ୱିବିବାହ କଲେ ସେହି ବିବାହକୁ ହିନ୍ଦୁ ବିବାହ ଆଇନ୍‌ର ୧୧ ଧାରା ଅନୁସାରେ କଚେରୀକୁ ଦରଖାସ୍ତ କରାଯାଇ ଅବୈଧ ବିବାହ ବୋଲି ଘୋଷଣା କରାଯାଇ ପାରିଲା । ହିନ୍ଦୁ ବିବାହ ଆଇନ୍‌ର ୧୭ ଧାରା ଅନୁସାରେ ଦ୍ୱିବିବାହ ପାଇଁ ଭାରତୀୟ ଦଣ୍ଡବିଧି ଆଇନ୍‌ର ୪୯୪ ଓ ୪୯୫ ଧାରା ଦୁଇଟି ଲାଗୁ କରାଯାଇ ଅପରାଧୀକୁ ଦଣ୍ଡିତ କରାଗଲା । ତେବେ ବର୍ତ୍ତମାନ ନିଶ୍ଚିତ ଭାବେ ଜଣାଗଲା ଯେ ହିନ୍ଦୁ ବିବାହିତ ପୁରୁଷ ବା ବିବାହିତା ମହିଳା ଯଦି ନିଜର ସ୍ତ୍ରୀ ବା ସ୍ୱାମୀ ବଞ୍ଚିଥିବା ସମୟରେ ଦ୍ୱିବିବାହ କରନ୍ତି ତେବେ ଦ୍ୱିବିବାହ ଅପରାଧରେ ଦଣ୍ଡିତ ହେବେ । ଏତ ଗଲା ଆଇନ୍‌ର ବ୍ୟବସ୍ଥା । ତେବେ ପ୍ରକୃତ ପକ୍ଷରେ ହିନ୍ଦୁ ମହିଳାମାନଙ୍କର, ବିବାହ ଆଇନ୍‌ରେ ତଥା ଅନ୍ୟାନ୍ୟ ଆଇନ୍‌ରେ ତ୍ରୁଟି ଯୋଗୁ ଓ ନିଜର ସ୍ୱାମୀଙ୍କର ଦ୍ୱିବିବାହ ଅପରାଧର କାରଣ ଯୋଗୁ କିପରି ଦୁରାବସ୍ଥା ହୁଏ ତାହା ଏଠାରେ ବିଶ୍ଳେଷଣ କରାଯାଉଛି ।

ହିନ୍ଦୁ ମହିଳା ସ୍ୱାମୀର ଦ୍ୱିବିବାହ କାରଣରୁ ହିନ୍ଦୁ ବିବାହ ଆଇନ୍‌ର ୧୩(୨) (କ) ଧାରା ଅନୁସାରେ ଛାଡ଼ପତ୍ର ପାଇଁ ଦରଖାସ୍ତ କରିବାରେ ସୁଯୋଗ ପାଇ ଛାଡ଼ପତ୍ର ପାଇପାରେ, ସ୍ୱାମୀ ବିରୁଦ୍ଧରେ ଦ୍ୱିବିବାହର ଦଣ୍ଡ ବିଧାନ ପାଇଁ ଅଭିଯୋଗ କରିପାରେ, ନିଜର ଭରଣପୋଷଣ ସ୍ୱାମୀଠାରୁ ପାଇବାର ସୁଯୋଗ ଲାଭ କରିପାରେ ତଥାପି ସ୍ତ୍ରୀର ଦୁଃଖ ଶତଗୁଣିତ ହୁଏ । କାରଣ ଅଧିକାଂଶ ହିନ୍ଦୁ ମହିଳା ହେଉଛନ୍ତି ଅଶିକ୍ଷିତା ଓ ରୋଜଗାର ଅକ୍ଷମା । ସେମାନେ ନିଜର ସ୍ୱାମୀର ଆଶ୍ରା ନେଇ ଚଳନ୍ତି । ଯଦି ତାର ସ୍ୱାମୀ ଦ୍ୱିବିବାହ କରିପକାଏ ତେବେ ସ୍ତ୍ରୀର ଦୁଃଖର ଅନ୍ତ ନାହିଁ ଯଦିଓ ହିନ୍ଦୁ ବିବାହ ଆଇନ୍‌ର ୧୭ ଧାରା ଅନୁସାରେ ସ୍ୱାମୀର ଦ୍ୱିବିବାହ ଅପରାଧ ପାଇଁ ଦଣ୍ଡ ବ୍ୟବସ୍ଥା ଲାଗୁ ହୁଏ ତଥାପି ପ୍ରଥମ ସ୍ତ୍ରୀ ସ୍ୱାମୀ ବିରୁଦ୍ଧରେ କଚେରୀକୁ ଗଲାବେଳେ ଓ ପର ମୁହୂର୍ତ୍ତରେ କେମିତି ଅସୁବିଧାର ସମ୍ମୁଖୀନ ହୁଏ ତାହା ନିମ୍ନମତେ ପ୍ରଦାନ କରାଗଲା ।

## ବିବାହିତା ସ୍ତ୍ରୀର ଦୁଃଖ ଓ ରକ୍ଷିତାର ଆନନ୍ଦ

ଦ୍ୱିବିବାହ ଅପରାଧ ପାଇଁ ସିନା ହିନ୍ଦୁ ବିବାହ ଆଇନ୍ ଦଣ୍ଡ ବ୍ୟବସ୍ଥା କରିଛି କିନ୍ତୁ କୌଣସିଠାରେ ବିବାହିତ ବ୍ୟକ୍ତି ଦ୍ୱିତୀୟଥର ପାଇଁ ଅନ୍ୟ ଗୋଟିଏ ସ୍ତ୍ରୀକୁ ହିନ୍ଦୁ ବିବାହ ପଦ୍ଧତିରେ ବିବାହ ନ କରି ଖାଲି ରକ୍ଷିତା କରି ରଖିଲେ ଦଣ୍ଡ ବ୍ୟବସ୍ଥା କରିନାହିଁ । ବିବାହିତା ସ୍ତ୍ରୀ ମଧ୍ୟ ଯଦି ସ୍ୱାମୀର ଦ୍ୱିବିବାହରେ ଅସୁବିଧାରେ ପଡ଼ି ସ୍ୱାମୀର ଦଣ୍ଡ ପାଇଁ କଚେରୀକୁ ଯାଏ ଓ ଆଇନ୍‌ର ତ୍ରୁଟି ଯୋଗୁ ପ୍ରମାଣ କରିବାରେ ଅକ୍ଷମ ହୁଏ ତେବେ ତାର ସ୍ୱାମୀ ଦ୍ୱିତୀୟ ପତ୍ନୀ ସହ ଛାତି ଫୁଲେଇ ବୁଲିବାର ସୁଯୋଗ ପାଇ ପ୍ରଥମ ସ୍ତ୍ରୀର କପାଳରେ ଚୂନ ଲିପିବାରେ ଆନନ୍ଦ ପାଏ ଓ ଦ୍ୱିତୀୟ ବିବାହଟି ପ୍ରମାଣ ନ ହୋଇ ପାରିବାରୁ ଦ୍ୱିତୀୟା ସ୍ତ୍ରୀ ରକ୍ଷିତା ହିସାବରେ ମଉଜ ମଜଲିସ୍‌ରେ କାଳାତିପାତ କରି ପ୍ରଥମ ସ୍ତ୍ରୀଟିର ବାଳକଣ୍ଟକର ରୂପ ନିଏ ।

## ପ୍ରେମ ଚୁକ୍ତିପତ୍ରର କରାମତି

ରକ୍ଷିତା ଚୁକ୍ତିପତ୍ର, ଉପପତ୍ନୀର ଚୁକ୍ତିପତ୍ର, ଏକାଠି ରହିବାର ଚୁକ୍ତିପତ୍ର, ମହିଳା ବନ୍ଧୁ, ଜୀବନର ସାଙ୍ଗ, ବନ୍ଧୁତାର ଚୁକ୍ତିପତ୍ର ଇତ୍ୟାଦି ହେଉଛି ଚୁକ୍ତିପତ୍ର ଆଇନ୍‌ର ଭେଳିକି । କାରଣ ବିନା ବିବାହରେ ଯଦି ସ୍ୱାମୀ ନିଜ ବିବାହିତ ପତ୍ନୀ ଛଡ଼ା ଅନ୍ୟ ସ୍ତ୍ରୀ ସହ ପ୍ରେମ ଚୁକ୍ତିପତ୍ର, ବନ୍ଧୁତାର ଚୁକ୍ତିପତ୍ର ବଳରେ ବନ୍ଧୁତା ସ୍ଥାପନ କରି ରକ୍ଷିତା ହିସାବରେ ରଖିପାରେ ତେବେ ବିବାହିତା ପତ୍ନୀଟିର ଗୁମୁରି ଗୁମୁରି କାନ୍ଦିବା ଛଡ଼ା ଉପାୟ ନାହିଁ । ପ୍ରାୟ ସ୍ୱାମୀମାନେ ଏକ ପତ୍ନୀ ବ୍ରତରେ ବିରକ୍ତି ପ୍ରକାଶ କରି ଯେନତେନ ପ୍ରକାରରେ ଉପପତ୍ନୀ, ରକ୍ଷିତା, ମହିଳା ବନ୍ଧୁ ଯୋଗାଡ଼ କରି ପ୍ରଥମ ବିବାହିତା ପତ୍ନୀକୁ କନ୍ଦାଇବାରେ ସାହାଯ୍ୟ କରନ୍ତି ।

## ଦ୍ୱିବିବାହ ଅପରାଧ ଧର୍ତ୍ତବ୍ୟ ଅପରାଧ ହୋଇ ନ ଥିବାରୁ ଦ୍ୱିବିବାହ ଅପରାଧୀ ସ୍ୱାମୀ ପାଇଁ ସୁବର୍ଣ୍ଣ ସୁଯୋଗ

ଧର୍ତ୍ତବ୍ୟ ଅପରାଧରେ ଅପରାଧୀଙ୍କୁ ପୋଲିସ୍ କଚେରୀର ପରୱାନା ନ ପାଇ ମଧ୍ୟ ବାନ୍ଧି ପାରିବେ, କିନ୍ତୁ ଦ୍ୱିବିବାହ ଅପରାଧ ଧର୍ତ୍ତବ୍ୟ ଅପରାଧ ହୋଇ ନ ଥିବାରୁ ଅପରାଧୀ ସ୍ୱାମୀ ପୋଲିସ୍ ଆଗରେ ତଥା ସମାଜ ଆଗରେ ଦ୍ୱିତୀୟ ସ୍ତ୍ରୀ ସହ ଛାତି ଫୁଲେଇ ଚାଲିପାରେ ।

## ସ୍ତ୍ରୀ ସ୍ୱାମୀ ବିରୁଦ୍ଧରେ ଅଭିଯୋଗ କରିବାରେ ଅନିଚ୍ଛୁକଭାବ

ଯେଉଁ ବିବାହିତା ସ୍ତ୍ରୀ ସ୍ୱାମୀର ଦ୍ୱିବିବାହ ଅପରାଧ ଯୋଗୁ ଅସୁବିଧାରେ ପଡନ୍ତି ସେ ଅପରାଧୀ ସ୍ୱାମୀଙ୍କ ବିରୁଦ୍ଧରେ କଚେରୀରେ ଅଭିଯୋଗ କରିବାର ବ୍ୟବସ୍ଥା ଅଛି । ଏହା ତାଙ୍କଛଡ଼ା ଆଉ କେହି କରିପାରିବେ ନାହିଁ । କିନ୍ତୁ ହିନ୍ଦୁ ମହିଳା, ଯେ ହେଉଛି ଧର୍ମଭୀରୁ ସେ ସ୍ୱାମୀର ଅପରାଧରେ ନିଜେ ଗଡ଼ିଯାଉ ପଛେ ସ୍ୱାମୀ ବିରୁଦ୍ଧରେ କଚେରୀକୁ ଯାଇ ଅଭିଯୋଗ ଦ୍ୱାରା ସ୍ୱାମୀଙ୍କୁ ଅସୁବିଧାରେ ପକାଇବାକୁ ପ୍ରାୟ ଚାହେଁ ନାହିଁ । ପ୍ରାୟ ହିନ୍ଦୁ ସମାଜରେ ଅଳ୍ପ କେତେକଙ୍କ ଛଡ଼ା ଅଧିକାଂଶ କ୍ଷେତ୍ରରେ ସ୍ତ୍ରୀ ଦ୍ୱିବିବାହରେ ଅପରାଧ କରିଥିବା ସ୍ୱାମୀ ବିରୁଦ୍ଧରେ ଅଭିଯୋଗ ନ କରିବା ହେତୁ ଅପରାଧୀ ସ୍ୱାମୀ ଆନନ୍ଦରେ ଦ୍ୱିତୀୟ ସ୍ତ୍ରୀ ସହ କାଳାତିପାତ କରେ ଓ ପ୍ରଥମ ପତ୍ନୀର ଅବସ୍ଥା ଗାଆଣୀ ଗାଏନି ।

## ସ୍ତ୍ରୀର ସ୍ୱାମୀ ନିକଟରେ ଅର୍ଥନୈତିକ ନିର୍ଭରଶୀଳତା

ଭାରତରେ ଥିବା ହିନ୍ଦୁ ମହିଳାମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଅଶିକ୍ଷିତା ଓ ରୋଜଗାରଶୂନ୍ୟା, ନିଜ ଘରେ ରୋଷେଇବାସ ଛଡ଼ା ଅନ୍ୟ କେଉଁଠାରୁ ରୋଜଗାର କରି ଚଳିବାର ରାସ୍ତା ନ ଥାଏ । ତେଣୁ ବାଧ ହୋଇ ଅର୍ଥନୈତିକ କ୍ଷେତ୍ରରେ ସ୍ୱାମୀ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେବା ଛଡ଼ା ଅନ୍ୟ ଉପାୟ ନ ଥାଏ । ତେଣୁ ସ୍ୱାମୀ ଯଦି ଦ୍ୱିବିବାହ ଅପରାଧ କରେ ତେବେ ସେହି ସ୍ୱାମୀ ବିରୁଦ୍ଧରେ ଠିଆହେବା ପାଇଁ ପ୍ରଥମ ସ୍ତ୍ରୀ ଆଦୌ ସାହାସ କରେ ନାହିଁ, କାରଣ ସେ ଜାଣେ ସ୍ୱାମୀ ତାର ଭର୍ତ୍ତା, କର୍ତ୍ତା, ଦଇବ ବିଧାତା, ସ୍ୱାମୀ ଯାହା କରୁ ପଛେ ସେ ପିତଳ ହାଣ୍ଡି କିନ୍ତୁ ମାଟି ହାଣ୍ଡି ସ୍ତ୍ରୀ, ପିତଳ ହାଣ୍ଡି ସ୍ୱାମୀ ବିରୁଦ୍ଧରେ ଠିଆ ହେଲେ ଭାଙ୍ଗିଯିବା ଛଡ଼ା ଅନ୍ୟ ଗତି କ'ଣ ଅଛି ?

## ଶିକ୍ଷାହୀନତା

ହିନ୍ଦୁ ମହିଳାମାନେ ପ୍ରାୟ ଅଧିକାଂଶ ଅଶିକ୍ଷିତା, ସାଧାରଣ ଶିକ୍ଷା ନ ଥିବା ବେଳେ ଆଇନ୍ ବିଷୟରେ ଶିକ୍ଷା କରିବାର ପ୍ରଶ୍ନ ତାଙ୍କ ପାଖରେ ଉଠୁ ନାହିଁ, ତେଣୁ ସେମାନଙ୍କ ପାଇଁ ଆଇନ୍‌ରେ କେଉଁ କେଉଁ ସୁବିଧା ଓ ପ୍ରତିକାର ବ୍ୟବସ୍ଥା ରହିଛି ସେମାନେ କିପରି ଜାଣିବେ । ତେଣୁ ସ୍ୱାମୀମାନଙ୍କ ଦ୍ୱିବିବାହ ଅପରାଧକୁ ସେମାନେ ମୁଣ୍ଡପାତି ସହିବାକୁ ବାଧ ହୁଅନ୍ତି ।

## ବିବାହ ଉତ୍ସବର ପ୍ରମାଣଜନିତ ଦୁରାବସ୍ଥା

ସ୍ୱାମୀର ଦ୍ୱିବିବାହ ଅପରାଧ ପାଇଁ ଦଣ୍ଡ ବିଧାନର ଆଶା ରଖି ସ୍ତ୍ରୀ ଯଦି କଚେରୀକୁ ଯାଆନ୍ତି ତେବେ ତାଙ୍କ ଉପରେ ପ୍ରଥମ ଓ ଦ୍ୱିତୀୟ ବିବାହର ଉତ୍ସବଗୁଡ଼ିକ ହିନ୍ଦୁ ରୀତିରେ ଅନୁଷ୍ଠିତ ହୋଇଛି ବୋଲି ପ୍ରମାଣ କରିବାକୁ ପଡ଼େ ଯଦି ନିଜର ବିବାହଟି ପ୍ରମାଣ କରି ଦ୍ୱିତୀୟ ବିବାହଟି ପ୍ରମାଣ କରି ନ ପାରେ ତେବେ ସ୍ୱାମୀର ଦଣ୍ଡ ନାହିଁ ଓ ଦ୍ୱିତୀୟା ସ୍ତ୍ରୀ ରକ୍ଷିତା ହୋଇ ଆନନ୍ଦରେ ରହେ । ଯଦି ନିଜର ବିବାହଟି ପ୍ରମାଣ ହୋଇ ନ ପାରିଲା ଓ ଦ୍ୱିତୀୟ ବିବାହଟି ପ୍ରମାଣିତ ହେଲା ତେବେ ନିଜେ ପ୍ରଥମ ସ୍ତ୍ରୀ ହେଲେ ମଧ୍ୟ ରକ୍ଷିତା ପଦବାଚ୍ୟା ହୁଏ ଓ ଦ୍ୱିତୀୟା ସ୍ତ୍ରୀ ସବୁ ଦିଗରୁ ସୁଖରେ ରହେ । ସେ ଯାହାହେଉ ରକ୍ଷଣଶୀଳା ଅଶିକ୍ଷିତା ଓ ଲଜ୍ଜ୍ୟାଶୀଳା ସ୍ତ୍ରୀମାନଙ୍କ ଉପରେ ବିବାହ ଉତ୍ସବଗୁଡ଼ିକର ପ୍ରମାଣ କରିବାର ଦାୟିତ୍ୱ ଦ୍ୱିବିବାହ ଅପରାଧ ଆଇନ୍‌ରେ ଏତେ କଡ଼ାକଡ଼ି ଭାବରେ ଲଦି ଦିଆଯାଏ ଯେ ଏଣେ ସ୍ୱାମୀର ଦ୍ୱିବିବାହ ଜନିତ ଦୁଃଖରେ ଏ ପ୍ରକାର ଗୁରୁ ଦାୟିତ୍ୱ ବୋଝ ଉପରେ ନଳିତା ବିଡ଼ା ପରି ପ୍ରତୀୟମାନ ହୁଏ, ପ୍ରାୟ ପ୍ରମାଣ ଅଭାବରୁ ଅଧିକାଂଶ ଅପରାଧୀ ସ୍ୱାମୀ ନିର୍ଦ୍ଦୋଷରେ ଖଲାସ ହୁଅନ୍ତି ।

## ଦ୍ୱିବିବାହ ଦ୍ୱାରା ଅବୈଧ ସନ୍ତାନମାନଙ୍କୁ ବୈଧତା ପ୍ରଦାନ

ଦ୍ୱିବିବାହକୁ ଅପରାଧ ବୋଲି ଧରାଗଲେ ମଧ୍ୟ ସେହି ଅବୈଧ ବିବାହରୁ ଉତ୍ପନ୍ନ ଅବୈଧ ସନ୍ତାନମାନଙ୍କୁ ହିନ୍ଦୁ ବିବାହ ଆଇନ୍‌ର ୧୮ ଧାରା ବୈଧତା ପ୍ରଦାନ କରେ । ତେଣୁ ପ୍ରଥମ ବିବାହର ବୈଧ ସ୍ତ୍ରୀ ଓ ବୈଧ ସନ୍ତାନମାନଙ୍କ ଉପରେ ଉକ୍ତ ୧୮ ଧାରା କେଉଁ ପରିମାଣରେ ଚାପ ପକାଉଥିବ ତାହା ସହଜରେ ଅନୁମେୟ ।

## ହିନ୍ଦୁ ବିବାହ ଆଇନ୍‌ର ଉଦ୍ଦେଶ୍ୟ ଓ ଆଇନ୍ ତର୍ଜମାରେ ଅସମାନତା

ଦ୍ୱିବିବାହକୁ ଅସିଦ୍ଧ ଘୋଷଣା କରି ଏହାକୁ ଦଣ୍ଡନୀୟ ଅପରାଧ ବୋଲି ଧରାଯାଇ ଏହାର ମୂଳୋତ୍ପାଟନ ପାଇଁ ହିନ୍ଦୁ ବିବାହ ଆଇନ୍‌ର ଉଦ୍ଦେଶ୍ୟ ଥିଲେ ମଧ୍ୟ ଆଇନ୍ ତର୍ଜମାକାରୀଙ୍କର କଡ଼ା ନୀତିର ତର୍ଜମା ଦ୍ୱାରା ଅପରାଧୀ ଦଣ୍ଡ ପାଇବା ପରିବର୍ତ୍ତେ ନିର୍ଦ୍ଦୋଷରେ ଖଲାସ ହୋଇ ଯାଉଛି । ତେଣୁ ଆଇନ୍‌ର ଉଦ୍ଦେଶ୍ୟ ପୂରଣ ହୋଇ ପାରୁନାହିଁ । ନିରିହା ପ୍ରଥମ ବିବାହିତା ସ୍ତ୍ରୀର ଦୁଃଖ ଶତଗୁଣିତ ହେଉଛି ଓ ଅପରାଧୀ ସମାଜରେ ସୁନାପୁଅ ଭଳି ଛାତି ଫୁଲେଇ ବୁଲି ପାରୁଛି ।

## ହିନ୍ଦୁ ଆଇନ୍‌ର ପ୍ରତିଷେଧକ ବ୍ୟବସ୍ଥାର ଅଭାବ

ପ୍ରଥମ ବିବାହିତା ସ୍ତ୍ରୀ ତାଙ୍କ ସ୍ୱାମୀଙ୍କର ଦ୍ୱିତୀୟ ସ୍ତ୍ରୀ ଗ୍ରହଣ ସମୟରେ ଏହି ଅପରାଧମୂଳକ କାର୍ଯ୍ୟରୁ ବାଧତାମୂଳକ ଭାବରେ ସ୍ୱାମୀଙ୍କୁ ବାରଣ କରିବା ପାଇଁ ହିନ୍ଦୁ ବିବାହ ଆଇନ୍‌ରେ କିଛି ବ୍ୟବସ୍ଥା ନାହିଁ । ତେଣୁ ସ୍ୱାମୀ ସମାଜ ଆଖିରେ, ପ୍ରଥମ ସ୍ତ୍ରୀ ଆଖିରେ, ପୋଲିସ୍ ଆଖିରେ ତଥା କଚେରୀ ଆଖିରେ ଧୂଳି ଦେଇ ଖୋଲା ଭାବରେ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରିବାର ସୁଯୋଗ ପାଉଛି ।

## ଦ୍ୱିବିବାହ ଅପରାଧ ଜାମିନଯୋଗ୍ୟ ଅପରାଧ

ଦ୍ୱିବିବାହ ଅପରାଧ ଜାମିନଯୋଗ୍ୟ ଅପରାଧ ହୋଇଥିବାରୁ ଦ୍ୱିବିବାହ ଅପରାଧ ଜାମିନଯୋଗ୍ୟ ଅପରାଧ ହୋଇଥିବାରୁ ଅପରାଧୀ ଜାମିନ ପାଇଁ ମକଦ୍ଦମା କରିବାକୁ ଆସିଥିବା ଦୁଃଖୀ ପ୍ରଥମା ସ୍ତ୍ରୀ ଆଗରେ ଦ୍ୱିତୀୟା ସ୍ତ୍ରୀ ସହ ଆରାମରେ ଛାତି ଫୁଲେଇ ବୁଲିବାର ଯେଉଁ ସୁଯୋଗ ପାଉଛି ତାହା ସେହି ପ୍ରଥମ ସ୍ତ୍ରୀଙ୍କର କଟା ଘା'ରେ ଚୁନ ଲିପିବାର ଶୋଭାକ ଯୋଗାଇ ନ ଥିବକି ?

## ଆଇନ୍ ତିଆରିରେ ତ୍ରୁଟି

ହିନ୍ଦୁ ବିବାହ ଆଇନ୍‌ର ୭ମ ଧାରା, ୧୭ ଧାରା, ଭାରତୀୟ ଦଣ୍ଡବିଧି ଆଇନ୍‌ର ୪୯୪ ଧାରା ଓ ଭାରତୀୟ ପ୍ରମାଣ ଆଇନ୍‌ର ୫୦ ଧାରା ଇତ୍ୟାଦିରେ ଅନେକ ତ୍ରୁଟି ଥିବାରୁ ଦ୍ୱିବିବାହ ଅପରାଧରେ ଦଣ୍ଡିତ ହେବାକୁ ଥିବା ଧୂର୍ତ୍ତ ସ୍ୱାମୀ ଆଇନ୍ ତ୍ରୁଟି ଗଳିଆରେ ସହଜରେ ଖସିଯାଇ ଖଣ୍ଡିଗୁଡ଼ି ହୋଇ ସୁନା ପୁଅ ଭଳି ଠିଆ ହେବାର ଭାଗ୍ୟ ଯୋଗୁ ଦୁର୍ବଳା, ଦୁଃଖୀ ପ୍ରଥମ ବିବାହିତା ହିନ୍ଦୁ ମହିଳା ଯେଉଁ ଦୁର୍ଯୋଗର ସମ୍ମୁଖୀନ ହୁଏ ତାହା ସହଜରେ କଳ୍ପନା କରିହେବ ନାହିଁ ।

## ଦୁର୍ବଳା ହିନ୍ଦୁ ମହିଳାର ସତ୍‌ସାହାସର ଅଭାବ

ହିନ୍ଦୁ ମହିଳାର ଆର୍ଥିକ ମାନ, ଶିକ୍ଷାଗତ ଯୋଗ୍ୟତା, ମନ ବଳର ତଥା ସତ୍‌ସାହାସର ଅଭାବ ହେତୁ ଦ୍ୱିବିବାହ ଅପରାଧରେ ଜଡ଼ିତ ହୋଇଥିବା, ନିଜକୁ 'ପିତଳ ମାଠିଆ' ବୋଲି ମନେ କରୁଥିବା ସ୍ୱାମୀ ଆଗରେ ଠିଆ ହେବାର ଦମ୍ଭ କାହିଁ ? ତେଣୁ ସ୍ୱାମୀ ତାର ଯାହା କରୁ ପଛେ କର୍ମକୁ ଓ ଭାଗ୍ୟକୁ ଆଦେରିବା ଛଡ଼ା ସେହି ସ୍ତ୍ରୀଙ୍କର ଅନ୍ୟ ଉପାୟ ଆଉ କ'ଣ ଅଛି, ନ୍ୟାୟ ପାଇଁ ଚେଷ୍ଟା କରିଲେ ଫଳ ନାହିଁ କିମ୍ବା ସ୍ୱାମୀଙ୍କୁ ଦୋଷମୁକ୍ତ କାର୍ଯ୍ୟରୁ ନିବର୍ତ୍ତାଇବା ପାଇଁ ବଳ ବି ନାହିଁ ।

## ନୈତିକ ଶିକ୍ଷାର ଅଭାବ

ନୈତିକ ଶିକ୍ଷାର ଅଭାବ ହେତୁ ସମାଜରୁ ନୈତିକ ମାନ ହ୍ରାସ ପାଉଛି । ମନୁଷ୍ୟ ଆଜିକାଲି ଲାଞ୍ଜହୀନ ପଶୁ ଭଳି ନିଜର ଇନ୍ଦ୍ରିୟ ଲାଳସାର ବଶବର୍ତ୍ତୀ ହୋଇ ଅନ୍ୟ ସ୍ୱାମୀ ବା ସ୍ତ୍ରୀ ଗ୍ରହଣ କରୁଛି । ବିଶେଷତଃ ପୁରୁଷମାନଙ୍କ ପକ୍ଷରେ ଏହା ଅଧିକ ହେଉଛି । ପାଶ୍ଚାତ୍ୟ ଶିକ୍ଷା, ପାଶ୍ଚାତ୍ୟ ଢଙ୍ଗ ଓ ପାଶ୍ଚାତ୍ୟ ଧାରାରେ ତିଆରି ଆଇନ୍ ଭାରତୀୟ ସଂସ୍କୃତିରେ କୁଠାରାଘାତ କରିଛି । ହିନ୍ଦୁମାନଙ୍କ ଭିତରେ ଦ୍ୱିବିବାହ ଅପରାଧ ବଢୁଛି । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମିଳାମିଶାର ସୁଯୋଗ ଦିଆଗଲେ ମଧ୍ୟ ଜେଡ଼ିଗୁଡ଼ କହୁଣିକି ବୋହିଗଲା ପରି ଦ୍ୱିତୀୟା ସ୍ତ୍ରୀକୁ ଭଲ ନ ପାଇ ପ୍ରଥମା ସ୍ତ୍ରୀକୁ ଭଲ ପାଇବାର ଆଶା କାହିଁ ?

## ହିନ୍ଦୁ ବିବାହକୁ ବାଧ୍ୟତାମୂଳକ ତାଲିକାଭୁକ୍ତ ନ କରିବାରୁ ଅସୁବିଧା

ଦ୍ୱିବିବାହ ଅପରାଧକୁ ପ୍ରମାଣଯୋଗ୍ୟ କରିବାକୁ ହେଲେ ପ୍ରଥମ ବିବାହ ଉତ୍ସବ ଓ ଦ୍ୱିବିବାହର ଉତ୍ସବକୁ ପ୍ରମାଣ କରିବାକୁ ପଡ଼ିଥାଏ । ଯଦି ଗୋଟିଏ ହିନ୍ଦୁ ମହିଳାର ସ୍ୱାମୀ ଦ୍ୱିବିବାହ ଅପରାଧ କରିଥାନ୍ତି ତେବେ ଦୁଇଟିଯାକ ବିବାହ ହିନ୍ଦୁ ରୀତିରେ ଆଇନ୍ ସମ୍ମତ ଭାବରେ ହୋଇଛି ବୋଲି ପ୍ରମାଣ କରିବାର ଦାୟିତ୍ୱ ସେହି ଦୁର୍ବଳା ମହିଳା ଉପରେ ପଡୁଥିବାରୁ ସେ କି ପ୍ରକାର ଅସୁବିଧାର ସମ୍ମୁଖୀନ ହେଉଥିବେ ତାହା ସହଜରେ ଅନୁମେୟ । ଯଦି ହିନ୍ଦୁ ବିବାହ ଆଇନ୍‌ର ପଞ୍ଚମ ଧାରାରେ ଥିବା ହିନ୍ଦୁ ବିବାହକୁ ତାଲିକାଭୁକ୍ତ କରିବାର ଆଇନ୍‌କୁ ବାଧ୍ୟତାମୂଳକ ଭାବରେ କାର୍ଯ୍ୟକାରୀ କରାଯାଆନ୍ତା ତେବେ ବିବାହର ପ୍ରମାଣ ସହଜସାଧ୍ୟ ହୁଅନ୍ତା ଓ ଦ୍ୱିବିବାହ ଅପରାଧୀ ସ୍ୱାମୀଙ୍କୁ ଠିକଣା ଜବାବ ମିଳନ୍ତା ।

## ଧର୍ମାନ୍ତରର ସୁବିଧା

ବିବାହିତ ହିନ୍ଦୁ ପୁରୁଷ ଯଦି ମୁସଲମାନ୍ ଧର୍ମ ଗ୍ରହଣ କରେ ତେବେ ତା ପାଇଁ ଦ୍ୱିତୀୟା ସ୍ତ୍ରୀ ଗ୍ରହଣର କିଛି ପ୍ରତିବନ୍ଧକ ନାହିଁ । ଏ ପ୍ରକାର ସୁଯୋଗ ହିନ୍ଦୁ ପୁରୁଷ ପାଇବାର କାରଣ ହେଉଛି, ଭାରତରେ ଦ୍ୱିବିବାହ ଅପରାଧ ଆଇନ୍‌ଟି ସମାନ ଭାବରେ କାର୍ଯ୍ୟକାରୀ ହେଉନାହିଁ । ହିନ୍ଦୁ ଆଇନ୍‌ରେ ୧୯୫୫ ମସିହାରୁ ଏହା ଦଣ୍ଡନୀୟ ଅପରାଧ ବୋଲି ପରିଗଣିତ ହେଲେ ମଧ୍ୟ ମୁସଲମାନ୍ ପୁରୁଷମାନଙ୍କୁ ୪ଟି ପତ୍ନୀ ଗ୍ରହଣ କରିବା ପାଇଁ କିଛି ବାରଣ ନାହିଁ ।

## ଦ୍ୱିବିବାହ ଅପରାଧୀର ବିଚାର ପାଇଁ କଚେରୀର ସୀମା ବ୍ୟବସ୍ଥା

ଅପରାଧ ହେବାର ସ୍ଥାନ ଅପରାଧୀର ବିଚାର ପାଇଁ କଚେରୀର ସୀମା ନିର୍ଦ୍ଧାରଣରେ ସହାୟକ ହେଉଛି ଯାହାକି ହିନ୍ଦୁ ମହିଳାଙ୍କୁ ଅସୁବିଧାରେ ପକାଉଛି । ପ୍ରଥମ ବିବାହିତା ସ୍ତ୍ରୀ ପାଇଁ ତାଙ୍କ ସ୍ୱାମୀଙ୍କ ଦ୍ୱିତୀୟ ଅପରାଧମୂଳକ ବିବାହ ଦୂର ସ୍ଥାନରେ ହୋଇଥିଲେ ଦୂର ସ୍ଥାନରୁ ସାକ୍ଷୀଗୁଡ଼ା ଯୋଗାଡ଼ କରିବା ଓ ମକଦ୍ଦମା ଚଳେଇବା କେତେ କଷ୍ଟକର ବ୍ୟାପାର ତାହା ସହଜରେ ଅନୁମେୟ । ଏଥିରେ ପ୍ରଥମ ସ୍ତ୍ରୀଙ୍କର ଅର୍ଥନାଶ, ମନସ୍ତାପ ଓ ଦେହଗଞ୍ଜ ଛଡ଼ା ଆଉ କ'ଣ କୁହାଯାଇପାରେ ।

## ଆଇନ୍ ଆଖିରେ ନିର୍ଦ୍ଦୋଷ ଚିନ୍ତାଧାରାର ଅସୁବିଧା

ହିନ୍ଦୁ ବିବାହ ଆଇନ୍‌ର ୧୭ ଧାରା ଖୋଲାଖୋଲି ଭାବରେ ଭାରତୀୟ ଦଣ୍ଡବିଧି ଆଇନ୍‌ର ୪୯୪ ଓ ୪୯୫ ଧାରାକୁ ଦ୍ୱିବିବାହ ଅପରାଧ ପାଇଁ ଲାଗୁ କରାଯାଉ ଥିବାରୁ ଫୌଜଦାରୀ ଆଇନ୍‌ର ମୂଳସୂତ୍ର : ଅଇନ୍ ଆଖିରେ ସମସ୍ତେ ନିର୍ଦ୍ଦୋଷ ଚିନ୍ତାଧାରାଟି ଲାଗୁ ହେଉଛି । ଦେଖାଯାଏ ମକଦ୍ଦମା ଚଳେଇବାକୁ ଯାଇଛି ତା'ଉପରେ ପ୍ରମାଣ ଦାୟିତ୍ୱ ରହିଛି ଯେ ଦ୍ୱିବିବାହ କରିଥିବା ବ୍ୟକ୍ତି ନିଃସନ୍ଦେହରେ ଅପରାଧ କରିଛି । ଯଦି ଗୋଟିଏ ହିନ୍ଦୁ ମହିଳାର ସ୍ୱାମୀ ଦ୍ୱିବିବାହ କରିଛି ସେ କ୍ଷେତ୍ରରେ ସେ ସ୍ତ୍ରୀଙ୍କ ଉପରେ ପ୍ରମାଣ କରିବାର ଦାୟିତ୍ୱ କେତେ ଓଜନଦାର ହୋଇଥିବ ତାହା ବିଚାର୍ଯ୍ୟ । ଦୁର୍ବଳା, ଅଶିକ୍ଷିତା, ସ୍ୱାମୀ ସୁଖରୁ ବଞ୍ଚିତା ମହିଳା ପାଇଁ ନୂଆ ବାଟ କ'ଣ ତିଆରି କରାଯାଇ ପାରିବନି ?

ଉପରଲିଖିତ ଅସୁବିଧାଗୁଡ଼ିକ ଲକ୍ଷ୍ୟକଲେ ନିଶ୍ଚିତ ଭାବରେ କହିହେବ ଯେ ବର୍ତ୍ତମାନ ପ୍ରଚଳିତ ଆଇନ୍‌ଗୁଡ଼ିକର ଉପଯୁକ୍ତ ସଂସ୍କାର ଦରକାର ଯଦ୍ୱାରା ଦ୍ୱିବିବାହ ଅପରାଧୀ ପାଇଁ ଦଣ୍ଡ ବ୍ୟବସ୍ଥା ଠିକ୍ ଭାବରେ କାର୍ଯ୍ୟକାରୀ ହେବ, ହିନ୍ଦୁ ମହିଳା ଉପଯୁକ୍ତ ନ୍ୟାୟ ପାଇ ଦୁରାବସ୍ଥାରୁ ମୁକ୍ତି ପାଇବ ।

---

(କ) ହିନ୍ଦୁ ବିବାହ ଆଇନ୍, ୧୯୫୫ ।

(ଖ) ହିନ୍ଦୁ ବିବାହ ଆଇନ୍, ୧୯୫୫ର ୭ (ସପ୍ତମ) ଧାରା "ହିନ୍ଦୁ ବିବାହର ଉତ୍ସବ"ଗୁଡ଼ିକ ବିଷୟରେ ସୂଚନା ଦିଏ ।

(ଗ) ହିନ୍ଦୁ ବିବାହ ଆଇନ୍‌ର ୧୭ ଧାରାଟି ଦ୍ୱିବିବାହ ପାଇଁ ଦଣ୍ଡ ବ୍ୟବସ୍ଥା ବିଷୟରେ ସୂଚନା ଦିଏ ।

(ଘ) ଭାରତୀୟ ଦଣ୍ଡବିଧି ଆଇନ୍, ୧୮୬୦ର ୪୯୪ ଧାରା ଅନୁସାରେ ପୁରୁଷ ବା ସ୍ତ୍ରୀ ନିଜର ସ୍ତ୍ରୀ ବା ସ୍ୱାମୀ ବଞ୍ଚିଥିବା ଅବସ୍ଥାରେ ଦ୍ୱିବିବାହ କଲେ ସାତବର୍ଷ ପର୍ଯ୍ୟନ୍ତ ଜେଲ୍ ଦଣ୍ଡ ବା ଅର୍ଥ ଦଣ୍ଡରେ ଦଣ୍ଡିତ ହେବେ ।

(ଙ) ଭାରତୀୟ ଦଣ୍ଡବିଧି ଆଇନ୍, ୧୮୬୦ର ୪୯୫ ଧାରା ଅନୁସାରେ ଯଦି କେହି ନିଜର ପ୍ରଥମ ବିବାହକୁ ଲୁଚେଇ ଦେଇ ଦ୍ୱିତୀୟ ବିବାହ କରେ ତେବେ ତାଙ୍କୁ ୧୦ ବର୍ଷ ପର୍ଯ୍ୟନ୍ତ ଜେଲ୍ ଦଣ୍ଡ ବା ଅର୍ଥ ଦଣ୍ଡ ଦିଆଯିବ ।

(ଚ) ୧୯୫୫ ମସିହାର ହିନ୍ଦୁ ବିବାହ ଆଇନ୍‌ର ୫(୧) ଧାରାଟି ସୂଚାଏ ଯେ ଦୁଇ ହିନ୍ଦୁଙ୍କ ମଧ୍ୟରେ ବିବାହ କାର୍ଯ୍ୟ ସମ୍ପାଦନ ହୋଇପାରିବ ଯଦି ବିବାହ ସମୟରେ କୌଣସି ଗୋଟିଏ ପକ୍ଷର ସ୍ୱାମୀ ବା ସ୍ତ୍ରୀ ବଞ୍ଚି ନଥିବେ ।

---

ଅଧ୍ୟକ୍ଷ, ରାଜଧାନୀ ଆଇନ୍ ମହାବିଦ୍ୟାଳୟ,
ଭୁବନେଶ୍ୱର ।

**ଅନ୍ୟର ସ୍ୱାଧୀନତା ଅପହରଣ ପାଇଁ ଚେଷ୍ଟା ନ କରି ବା ଅନ୍ୟର ମୁକ୍ତିଲାଭର ଉଦ୍ୟମରେ ବାଧା ନ ଦେଇ ନିଜ ବାଟରେ ନିଜର କଲ୍ୟାଣ ସାଧନ ଦିଗରେ ଆମମାନଙ୍କୁ ଯେଉଁ ସ୍ୱାଧୀନତା ସୁଯୋଗ ଦେଇଥାଏ, ତାହାହିଁ ଏକମାତ୍ର ସ୍ୱାଧୀନତା ।**

**ଜନ୍ ଷ୍ଟୁଆର୍ଟ ମିଲ୍**

# ଓଡ଼ିଶାରେ ମତ୍ସ୍ୟଚାଷର ବିକାଶ

ପ୍ରଶାନ୍ତ ମହାପାତ୍ର

ଆମ ଦେଶରେ ଖାଦ୍ୟ ସାମଗ୍ରୀ ଉତ୍ପାଦନ ବୃଦ୍ଧି ଯେ ନ ଘଟିଛି, ସେ କଥା ନୁହେଁ । ତେବେ ଖାଦ୍ୟ ସାମଗ୍ରୀ ଯେଉଁମାନେ ବ୍ୟବହାର କରିବେ, ସେମାନଙ୍କ ସଂଖ୍ୟା ଆଜି ବହୁ ଗୁଣିତ । ଜନସଂଖ୍ୟାର ବିସ୍ଫୋରଣ ଆଜି ଏକ ଜାତୀୟ ସମସ୍ୟା । ଏହାର ନିୟନ୍ତ୍ରଣ ନିମିତ୍ତ ଜାତୀୟ ସ୍ତରରେ ନାନା କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

ବଞ୍ଚିବା ପାଇଁ ଆମେ ଯାହା ଖାଉଛେ, ସେଇ ଖାଦ୍ୟ ଭିତରେ ପୁଷ୍ଟିକର ଖାଦ୍ୟର ବିଶେଷ ଅଭାବ, ଦୁର୍ମୂଲ୍ୟ । ବର୍ତ୍ତମାନ ପୁଷ୍ଟିକର ଖାଦ୍ୟ, ବିଶେଷତଃ ପ୍ରାଣୀଜ ପୁଷ୍ଟିକର ଖାଦ୍ୟ ଯଥା ସମୟରେ ଯୋଗାଇବା ସମ୍ପ୍ରତି ଏକ ସମସ୍ୟା ହୋଇ ପଡ଼ିଛି । ଏହି ପ୍ରାଣୀଜ ପୁଷ୍ଟିକର ଖାଦ୍ୟ ଶରୀର ଗଠନ ପକ୍ଷେ ବିଶେଷ ସହାୟକ । ପ୍ରାଣୀଜ ପୁଷ୍ଟିକର ଖାଦ୍ୟ ଭିତରେ ମାଛ ଅନ୍ୟତମ । ବଜାରରେ ଦିନକୁ ଦିନ ମାଛର ଚାହିଦା ବୃଦ୍ଧି ପାଇବାରେ ଲାଗିଛି । ଏହାର ଏକମାତ୍ର ସମାଧାନ — ଗାଁ ଗହଳରେ ମତ୍ସ୍ୟ ଚାଷର ବିକାଶ । ଅନ୍ୟ କଥାରେ ବ୍ୟାପକ ମତ୍ସ୍ୟ ଚାଷ ।

## ସମୟ ଆସିଛି

ସମୟ ଉପଗତ । ମେହେନତୀ ମଣିଷକୁ ସ୍ୱାଗତ କରୁଛି ମତ୍ସ୍ୟ ଚାଷ ବିକାଶ କ୍ଷେତ୍ରରେ ସାମିଲ ହେବାକୁ । ଏକଦା ଯେଉଁ ମତ୍ସ୍ୟ ଚାଷ ଲୋକଙ୍କ ଆସ୍ଥା ଭାଜନ ହୋଇପାରି ନଥିଲା, ଆଜି ସେଇ ମତ୍ସ୍ୟ ଚାଷ ଏକ ଚରମ ଆବଶ୍ୟକତାରେ ପରିଣତ । ବାସ୍ତବତାର କଷଟିରେ ଚାଷୀ ମାଛ ଚାଷକୁ ଧାନ ଚାଷ ସହିତ ପରଖି ଚାଲିଛି । ଶେଷରେ ଏକ ସତ୍ୟରେ ଉପନୀତ ଧାନ ଚାଷ ତୁଳନାରେ ମତ୍ସ୍ୟ ଚାଷ ଅଧିକ ଲାଭଜନକ, ଅର୍ଥକରୀ ।

## ସମ୍ବଳ ପର୍ଯ୍ୟାପ୍ତ

ଏକ ସମୁଦ୍ର ଉପକୂଳବର୍ତ୍ତୀ ରାଜ୍ୟ ଓଡ଼ିଶାରେ ମତ୍ସ୍ୟ ଚାଷ ନିମିତ୍ତ ସମ୍ବଳ ପର୍ଯ୍ୟାପ୍ତ । ୬,୬୦,୫୮୨ ହେକ୍ଟର ଆୟତନ ବିଶିଷ୍ଟ ମଧୁର ଜଳ ମତ୍ସ୍ୟ ଚାଷ କ୍ଷେତ୍ର ଓ ୪,୧୦,୯୯୪ ହେକ୍ଟର ଆୟତନ ବିଶିଷ୍ଟ ଲୁଣିପାଣି କ୍ଷେତ୍ର ଆମ ରାଜ୍ୟରେ ରହିଛି । ଏହାର ସୁବିନିଯୋଗ ନିମିତ୍ତ ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହାର ସୁବିନିଯୋଗ ଦାୟିତ୍ୱ ସମ୍ପାଦନ କରିଛନ୍ତି ୩୦ ଗୋଟି ଜିଲ୍ଲାରେ ଗଠିତ ହୋଇଥିବା ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ଓ କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ପ୍ରତିଷ୍ଠିତ ଲୁଣିପାଣି ମାଛ ଚାଷ ଉନ୍ନୟନ ସଂସ୍ଥା ।

## ପ୍ରଥମ ଆବଶ୍ୟକତା ଉତ୍କୃଷ୍ଟ ଯାଆଁଳ

ପୋଖରୀ ଖୋଳାସାରି ବୈଜ୍ଞାନିକ କାର୍ଯ୍ୟସୂଚୀ ଅନୁଯାୟୀ ତାହାର ପ୍ରସ୍ତୁତି ପରେ ସର୍ବାଦୌ ଆବଶ୍ୟକତା ଉତ୍କୃଷ୍ଟ ଯାଆଁଳ । ମତ୍ସ୍ୟ ଚାଷର ସମସ୍ତ କାର୍ଯ୍ୟକ୍ରମ ମଧ୍ୟରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି । ଉତ୍କୃଷ୍ଟ ଯାଆଁଳ ଉତ୍ପାଦନ କରାଯାଇ ଆଗ୍ରହୀ ମତ୍ସ୍ୟ ଚାଷୀମାନଙ୍କ ଚାହିଦା ଅନୁସାରେ ଯଥା ସମୟରେ ଯୋଗାଇ ଦେବା । କୃତ୍ରିମ ପ୍ରଭାବିତ ପ୍ରଜନନ ଜରିଆରେ ଉତ୍ପାଦିତ ଯାଆଁଳ ଯଥାର୍ଥରେ ଜାତିଆ ବିଶୁଦ୍ଧ ଯାଆଁଳ । କୃତ୍ରିମ ପ୍ରଭାବିତ ପ୍ରଜନନ ପ୍ରଣାଳୀର ପ୍ରବର୍ତ୍ତନ ପୂର୍ବରୁ ବନ୍ୟା ସମୟରେ ନଦୀରୁ ପ୍ରାକୃତିକ ଉପାୟରେ ଯାଆଁଳ ସଂଗ୍ରହ କାର୍ଯ୍ୟକ୍ରମ ଏକ ବିଧିବଦ୍ଧ ଯୋଜନା ମାଧ୍ୟମରେ କରାଯାଉଥିଲା । ପରବର୍ତ୍ତୀ କାଳରେ ଏହା କାର୍ଯ୍ୟକାରୀ କରା ନଯିବାର କାରଣ ହେଲା, ଏହା ବାଛମିଶା ଯାଆଁଳ । ତେଣୁ ବିଶୁଦ୍ଧ ନୁହେଁ । ଆଶାନୁରୂପ ଉତ୍ପାଦନ ମଧ୍ୟ ମିଳିବାର କୌଣସି ଭରସା ନଥିଲା । କୃତ୍ରିମ ପ୍ରଭାବିତ ପ୍ରଣାଳୀ ଉନ୍ନତ ହେଲେ ମଧ୍ୟ ସମୟେ ସମୟେ ପ୍ରାକୃତିକ ବିପର୍ଯ୍ୟୟର ଶିକାର ହେବାକୁ ପରିସ୍ଥିତି ବାଧ୍ୟ କରୁଥିଲା । କିନ୍ତୁ ନୂତନ ଜ୍ଞାନ କୌଶଳର ଅଗ୍ରଗତି ଫଳରେ ଆଜି ବିଶୁଦ୍ଧ ଯାଆଁଳ ଉତ୍ପାଦନ କ୍ଷେତ୍ରକୁ ଆସେଇ ଆସିଛି ଆଧୁନିକ ହ୍ୟାଚେରୀ । ନିରାପଦ ଯାଆଁଳ ଉତ୍ପାଦନ ନିମିତ୍ତ ଏକ ଅଭିନବ ପ୍ରକଳ୍ପ । ୧୯୮୨ ମସିହାରେ ବିଶ୍ୱ ବ୍ୟାଙ୍କ ପୃଷ୍ଠପୋଷକତାରେ ଓଡ଼ିଶା ମତ୍ସ୍ୟ ଯାଆଁଳ ଉନ୍ନୟନ ନିଗମ ଜରିଆରେ ଚିଲିକା, ଚିପିଲିମା, ଶରଣଙ୍ଗ, ଉଦଳନଗର ଓ ବାଗୁଆଳଠାରେ ୪୯୬.୨୦ ଲକ୍ଷ ଟଙ୍କା ବ୍ୟୟରେ ବାର୍ଷିକ ୧୩୦ ଲକ୍ଷ ପୋନାଙ୍କର ବିଶୁଦ୍ଧ ଯାଆଁଳ ଉତ୍ପାଦନର ଲକ୍ଷ୍ୟ ହାତକୁ ନେଇ ୮୨ ହେକ୍ଟର ଆୟତନ ବିଶିଷ୍ଟ କ୍ଷେତ୍ରରେ ଏହା କାର୍ଯ୍ୟକାରୀ ହେଉଛି । ଯାଆଁଳ ଉତ୍ପାଦନ କ୍ଷେତ୍ରରେ ଜ୍ଞାନ କୌଶଳରେ ଅଗ୍ରଗତି ସଙ୍ଗେସଙ୍ଗେ ପରିମାଣକୁ ମଧ୍ୟ ବିସ୍ତାରକୁ ନିଆଯାଇପାରେ । ୧୯୮୦-୮୨ ଆର୍ଥିକ ବର୍ଷରେ କେବଳ ବିଭାଗୀୟ ପ୍ରକଳ୍ପରେ ୨୦୬୦.୩୬ ଲକ୍ଷ ଚାଷ ଯାଆଁଳ ଓ ୪୨୬.୬୬ ଲକ୍ଷ ବଡ଼ ଯାଆଁଳ ଉତ୍ପାଦନ କରାଯାଇଥିଲା । ୧୯୮୮-୮୯ ଆର୍ଥିକ ବର୍ଷ ଯାଆଁଳ ଚାଷ ଯାଆଁଳ ୪୭୩୮-୫୦ ଲକ୍ଷ ଓ ୭୭୭-୬୬ ହେକ୍ଟରୁ ବଡ଼ ଯାଆଁଳ ଚାଷ ଯାଆଁଳ ୧୯୮୦-୮୯ ମସିହାରେ ଲକ୍ଷରେ ଆସି ପହଞ୍ଚିଛି । ସମଗ୍ର ରାଜ୍ୟରେ ୧୯୮୦-୮୯ ମସିହାରେ ୪୨୭୮-୬୬ ଲକ୍ଷ ବଡ଼ ଯାଆଁଳ ଉତ୍ପାଦନ ସହିତ ୧୯୮୮-୮୯ ମସିହାରେ ଏହା ୨୭୦୨୨-୭୩ ଲକ୍ଷକୁ ବୃଦ୍ଧି ପାଇଛି ।

## ଜ୍ଞାନ କୌଶଳର ସମ୍ପ୍ରସାରଣ

ଆମ ଗାଁ ଗହଳିରେ ସାଧାରଣତଃ ମାଟିଘର। ବାଡ଼ିରେ ଅଛି ବହୁତ ଖାଲ, ଖମା ବା ଗଡ଼ିଆଟିଏ ଥିବା ସ୍ୱାଭାବିକ। ଏହା ଛଡ଼ା ଗାଁ ଗଣ୍ଡାରେ ପର୍ଯ୍ୟାପ୍ତ ଖାଲ, ପାଟ, ଅକାମୀ ପୋଖରୀ ରହିଛି। ଅବହେଳିତ ଅବସ୍ଥାରେ ପଡ଼ିଥିବା ଏହି ପୋଖରୀଗୁଡ଼ିକୁ ଉପଯୁକ୍ତ ସର୍ବେକ୍ଷଣ ପରେ ମାଛ ଚାଷ ଉପଯୋଗୀ କରିବା ସଙ୍ଗେସଙ୍ଗେ ମତ୍ସ୍ୟ ଚାଷୀମାନଙ୍କୁ ଋଣ, ରିହାତି ଓ ମାଛ ଚାଷରେ ତାଲିମ ଦେବା କାର୍ଯ୍ୟକ୍ରମକୁ ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ୧୩ ଗୋଟି ଜିଲ୍ଲାରେ ହାତକୁ ନେଇଛି। ପୂର୍ବରୁ ପୋଖରୀ ମାଛ ଚାଷ ପ୍ରଣାଳୀ ମଧ୍ୟ ପରିବର୍ତ୍ତିତ ହୋଇଛି। ଅଧିକ ଲାଭ ପାଇଁ କେବଳ ରୋହୀ, ଭାକୁର, ମିରିକାଳୀ ମାଛର ଚିରାଚରିତ ଚାଷ ନକରି ପୋଖରୀ ଜଳର ସବୁ ସ୍ତରରୁ ଖାଦ୍ୟ ସମାନ ଭାବରେ ସଂଗ୍ରହ କରୁଥିବା ସହଳ ବଢ଼ନ୍ତା ଦେଶୀ ଜାତିଆ ମାଛ ସହିତ ବିଲାତି ରୋହୀ, ସିଲଭର କାର୍ପ ଓ ଗ୍ରାସକାର୍ପ ମାଛ ଆନୁପାତିକ ହାରରେ ଛଡ଼ାଯାଇ ମିଶ୍ରିତ ମାଛ ଚାଷ ପ୍ରଣାଳୀ ମାଛ ଚାଷୀମାନଙ୍କୁ ପ୍ରଦର୍ଶନ କାର୍ଯ୍ୟକ୍ରମ ମାଧ୍ୟମରେ ଦେଖାଇ ଦିଆଯିବା ଫଳରେ ଆଜି ଆଗ୍ରହୀ ମାଛ ଚାଷୀମାନେ ମିଶ୍ରିତ ମାଛ ଚାଷକୁ ଗ୍ରହଣ କରି ସାରିଲେଣି। ବ୍ଲକରେ ଥିବା ମତ୍ସ୍ୟ ସମ୍ପ୍ରସାରଣ ଅଧିକାରୀମାନେ ଜାତିଆ ଯାଆଁଳ ଯୋଗାଇବା ସଙ୍ଗେ ବୈଷୟିକ କର୍ମସୂଚୀ ତଥା ନୂତନ ଜ୍ଞାନ କୌଶଳ ପ୍ରବର୍ତ୍ତନ ଜରିଆରେ ମିଶ୍ରିତ ମାଛ ଚାଷ ଉତ୍ପାଦନ କାର୍ଯ୍ୟକ୍ରମକୁ ଆଗେଇ ନେବା ଦିଗରେ ସହାୟତା କରୁଛନ୍ତି। କେତେକ ବର୍ଷ ଅବଧିରେ ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ଜରିଆରେ ୨୬,୩୯୭ ହେକ୍ଟର ଆୟତନ ବିଶିଷ୍ଟ ଜଳାଧାରର ଉନ୍ନତି କରାଯିବା ସଙ୍ଗେସଙ୍ଗେ ୧୭,୬୭୭ ଜଣ ବ୍ୟକ୍ତିଙ୍କୁ ବୈଜ୍ଞାନିକ ମତ୍ସ୍ୟ ଚାଷ ପ୍ରଣାଳୀରେ ପ୍ରଶିକ୍ଷଣ ଦିଆଯାଇଛି। ବିଗତ ୧୯୮୦-୮୧ ଆର୍ଥିକ ବର୍ଷରେ ମାତ୍ର ୧,୬୦୮ ହେକ୍ଟର କ୍ଷେତ୍ର ଉନ୍ନତ ହୋଇଥିଲା ଏବଂ ୧,୮୫୩ ଜଣ ବ୍ୟକ୍ତିଙ୍କୁ ବୈଜ୍ଞାନିକ ମତ୍ସ୍ୟ ଚାଷ ପ୍ରଣାଳୀରେ ମାଛ ଚାଷ କରିବାକୁ ତାଲିମ ଦିଆଯାଇଥିଲା।

ଚିରାଚରିତ ପ୍ରଣାଳୀ ଅନୁସରଣରେ ଯେଉଁ ପୋଖରୀରେ ଆଦୌ ଉତ୍ପାଦନ ହୋଇପାରୁ ନଥିଲା, ଆଜି ନୂତନ ଜ୍ଞାନ କୌଶଳ ସମ୍ପ୍ରସାରଣ ଫଳରେ ଆଶାନୁରୂପ ଉତ୍ପାଦନ ମତ୍ସ୍ୟ ଚାଷୀ ପାଇ ପାରିଛି ଏବଂ ଆର୍ଥିକ ସ୍ୱଚ୍ଛଳତା ଘଟାଇ ପାରିଛି। ବିଧିବଦ୍ଧ ବୈଷୟିକ କର୍ମସୂଚୀ ମାଧ୍ୟମରେ ପୋଖରୀ ପରିଚାଳନା କାର୍ଯ୍ୟକ୍ରମ ମତ୍ସ୍ୟ ଚାଷୀ ଆୟତ୍ତ କଲାପରେ ନିଜ କ୍ଷେତ୍ର ପ୍ରତି କ୍ରମଶଃ ମମତା ବୃଦ୍ଧି ପାଇପାରିଛି।

## ମତ୍ସ୍ୟ ଚାଷ ପାଇଁ ସୁବିଧା ସୁଯୋଗ

କଥାରେ ଅଛି 'ସୁଯୋଗ ଥରେ ଆସେ'। ବେଳକାଳ ଉଣ୍ଡି ସେ ସୁଯୋଗର ଅଧିକାରୀ ହେବା ମହତ ଲୋକର କର୍ତ୍ତବ୍ୟ। ବୈଜ୍ଞାନିକ ପ୍ରଣାଳୀରେ ମାଛ ଚାଷ କରି ଲାଭବାନ ହେବା ପାଇଁ ଆଜି ଅନେକ ସୁବିଧା ସୁଯୋଗ। ବ୍ଲକରେ ଅବସ୍ଥାପିତ ମତ୍ସ୍ୟ ସମ୍ପ୍ରସାରଣ ଅଧିକାରୀ ମତ୍ସ୍ୟ ଚାଷୀମାନଙ୍କୁ ମାଛ ଚାଷ ପାଇଁ ମିଳୁଥିବା ସୁବିଧା ସୁଯୋଗ ସମ୍ପର୍କରେ ସମସ୍ତ ସୂଚନା ଦେବା ପାଇଁ ସଦା ପ୍ରସ୍ତୁତ। ତାଙ୍କ ସହିତ ସମ୍ପର୍କ ସ୍ଥାପନ କ୍ରମେ ଏହା ଆଦାୟ କରାଯାଇ ପାରେ। ଜାତୀୟ ସ୍ତରରେ ଖୋଲିଥିବା ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମ (IRDP) ମଧ୍ୟ ପୋଖରୀରେ ମାଛ ଚାଷ ପାଇଁ ଉଦ୍ଦିଷ୍ଟ। ଏହି କାର୍ଯ୍ୟକ୍ରମରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବ୍ୟକ୍ତିମାନଙ୍କୁ ମାଛ ଚାଷ ଜରିଆରେ ଆର୍ଥିକ ଥଇଥାନ ମାଧ୍ୟମରେ ଉର୍ଦ୍ଧ୍ୱକୁ ଉଠାଇବା ଲାଗି ପ୍ରଚେଷ୍ଟା ଅବ୍ୟାହତ। ଏହି କାର୍ଯ୍ୟକ୍ରମରେ ସାଧାରଣ ମାଛ ଚାଷୀମାନଙ୍କ ପାଇଁ ଶତକଡ଼ା ୩୩ ୧/୩ ଭାଗ ରିହାତି ଓ ଜନଜାତି ଓ ଅନୁସୂଚିତ ଜାତି ମାଛ ଚାଷୀମାନଙ୍କ ପାଇଁ ଶତକଡ଼ା ୫୦ ଭାଗ ରିହାତି ବ୍ୟବସ୍ଥା ରହିଛି। ଆମ ରାଜ୍ୟରେ ମୁଖ୍ୟମନ୍ତ୍ରୀଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ଗ୍ରାମାଞ୍ଚଳର ଦରିଦ୍ରତମ ବ୍ୟକ୍ତିମାନଙ୍କର ଆର୍ଥିକ ଥଇଥାନ (ERRP) କାର୍ଯ୍ୟକ୍ରମରେ ଦରିଦ୍ରତମ ବ୍ୟକ୍ତି, ଜନଜାତି ଓ ଅନୁସୂଚିତ ଜାତିମାନଙ୍କ ପାଇଁ ପର୍ଯ୍ୟାପ୍ତ ସୁବିଧା ସୁଯୋଗ। କାର୍ଯ୍ୟକ୍ରମଟି ୧୯୮୦-୮୧ ଆର୍ଥିକ ବର୍ଷରୁ ପ୍ରବର୍ତ୍ତିତ। ଏହି କାର୍ଯ୍ୟକ୍ରମରେ ଜନଜାତି ଓ ଅନୁସୂଚିତ ଜାତିମାନଙ୍କ ପାଇଁ ଶତକଡ଼ା ଶହେଭାଗ ରିହାତି ଅର୍ଥାତ୍ ଜଣେ ମାଗଣାରେ ଏକ ମାଛ ପୋଖରୀର ଅଧିକାରୀ ହୋଇ ପାରିବେ। ଅନ୍ୟମାନଙ୍କ ପାଇଁ ଶତକଡ଼ା ୭୫ ଭାଗ ରିହାତି ବ୍ୟବସ୍ଥା ରହିଛି। ଏହି କାର୍ଯ୍ୟକ୍ରମର 'ଲୁଣି ପାଣି ମାଛ ଚାଷ'ରେ ସମସ୍ତ ମାଛ ଚାଷୀମାନଙ୍କ ପାଇଁ ଶତକଡ଼ା ୫୦ ଭାଗ ରିହାତି ବ୍ୟବସ୍ଥା ଅଛି। ଏଥି ସହିତ ଜଳ ଭଣ୍ଡାରରେ ମାଛଧରା କାର୍ଯ୍ୟକ୍ରମରେ ଜାଲ ଓ ଡଙ୍ଗା ପାଇଁ ଯଥାକ୍ରମେ ୨,୦୦୦ ଟଙ୍କା ଓ ୩,୦୦୦ ଟଙ୍କା ମିଳିବାର ବ୍ୟବସ୍ଥା ଅଛି। ଏଇ ମାଛଧରା ୟୁନିଟ୍‌ର ଉପଭୋକ୍ତା ୪ ଜଣ ସମସ୍ତେ ମତ୍ସ୍ୟଜୀବୀ ସମବାୟ ସମିତିର ସଦସ୍ୟ ହେବା ଦରକାର।

## ଜଳ ଭଣ୍ଡାରରେ ମାଛ ଚାଷ ଓ ମାଛ ଧରା

ଜଳସେଚନ ଓ ବିଦ୍ୟୁତ୍ ବିଭାଗ ଅଧୀନରେ ଥିବା ଜଳ ଭଣ୍ଡାରଗୁଡ଼ିକ ମାଛ ଚାଷ ପାଇଁ ପ୍ରକୃଷ୍ଟ କ୍ଷେତ୍ର। ମତ୍ସ୍ୟ ବିଭାଗ ଅଧୀନକୁ ହସ୍ତାନ୍ତର କରାଯାଇଥିବା ମୋଟ ୩୫ ଗୋଟି ଜଳ ଭଣ୍ଡାର ମଧ୍ୟରୁ ୨୯ ଗୋଟି ଜଳ ଭଣ୍ଡାରରେ ବଡ଼ ଯାଆଁଳ ଛଡ଼ାଯାଇଛି। ଓଡ଼ିଶା ମତ୍ସ୍ୟ ଯାଆଁଳ ଉତ୍ପାଦନ ନିଗମ କର୍ତ୍ତୃକ ୧୯ ଗୋଟି ଜଳ ଭଣ୍ଡାରରେ ବଡ଼ ଯାଆଁଳ ମଧ୍ୟ ଛଡ଼ାଯାଇଛି। ଜଳ ଭଣ୍ଡାରର ଉନ୍ନୟନର ମୂଳ ଉଦ୍ଦେଶ୍ୟ ହେଲା, ମାଛ ଉତ୍ପାଦନ ବୃଦ୍ଧି ଓ ମାଛ ଧରା ଜରିଆରେ ଅଧିକ ସଂଖ୍ୟକ କେତେକ ମତ୍ସ୍ୟଜୀବୀମାନଙ୍କୁ ଆୟ ନିଯୁକ୍ତି ସୁଯୋଗ ଯୋଗାଇ ଦେବା।

## ଲୁଣି ପାଣି ମାଛ ଚାଷର ଏକ ନୂଆ ଆହ୍ୱାନ

ପୋଖରୀର ମଧୁର ମାଛ ଚାଷଠାରୁ ଅଧିକ ଲାଭଜନକ ହେଉଛି ଲୁଣି ପାଣି ମାଛ ଚାଷ ଅଥବା ଚିଙ୍ଗୁଡ଼ି ଚାଷ। ଓଡ଼ିଶାର ପର୍ଯ୍ୟାପ୍ତ ଉପକୂଳବର୍ତ୍ତୀ ଲୁଆଡ଼ିଆ ଅଞ୍ଚଳ ଯେଉଁଠି ଏକଦା କୁଶ କାଶ ବି ନଥିଲା, ଯାହା ଏକଦା ମଲା ଭୂଇଁ ଆଖ୍ୟାରେ ଆଖ୍ୟାୟିତ ହେଉଥିଲା, ସେଇଠି ଆଜି ନୂଆ ଜୀବନ। ସେଇଠି ଆଜି ବ୍ୟାପକ ଚିଙ୍ଗୁଡ଼ି ଚାଷ। କୋଟିଏ ବର୍ଷରେ ଦି' କ୍ଷେପ ଫସଲ। ହତାଶ ଚାଷୀ ମୁହଁରେ ନୂଆ ହସ। ୧୯୮୦-୮୧ ଆର୍ଥିକ ବର୍ଷଠାରୁ ଆମ ରାଜ୍ୟରେ ଲୁଣି ପାଣି ମାଛ ଚାଷର ବିକାଶ ପାଇଁ ଅଭିନବ ଉଦ୍ୟମ ଆରମ୍ଭ ହୁଏ। ୧୯୮୩-୮୪ ମସିହା ବାଲେଶ୍ୱର ଓ କଟକ ଜିଲ୍ଲାକୁ ନେଇ ବାଲେଶ୍ୱରଠାରେ ଏବଂ ପୁରୀ ଓ ଗଞ୍ଜାମକୁ ନେଇ ପୁରୀଠାରେ ଏଇଭଳି ଦୁଇଟି ଲୁଣି ପାଣି ମତ୍ସ୍ୟ ଚାଷ ଉନ୍ନୟନ ସଂସ୍ଥା ପ୍ରତିଷ୍ଠିତ ହୁଏ। ୧୯୮୭-୮୮ ଆର୍ଥିକ ବର୍ଷର ଅନ୍ତିମ ଭାଗରେ କଟକଠାରେ ଅନ୍ୟ ଏକ ସଂସ୍ଥା ସ୍ଥାପିତ ହୁଏ ଏବଂ ସମ୍ପ୍ରତି ଗଞ୍ଜାମ ଜିଲ୍ଲାରେ ଅନ୍ୟ ଏକ ସଂସ୍ଥା ପ୍ରତିଷ୍ଠିତ ହେବାକୁ ଯାଉଛି। ଅର୍ଥାତ୍ ଚାରୋଟି ଉପକୂଳବର୍ତ୍ତୀ ଜିଲ୍ଲା କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମରେ ଚାରୋଟି ଲୁଣି ପାଣି ମତ୍ସ୍ୟ ଚାଷ ଉନ୍ନୟନ ସଂସ୍ଥା ଅଗଣିତ ମତ୍ସ୍ୟ ଚାଷୀମାନଙ୍କର ସେବା କରିବାକୁ ତତ୍ପର। ପୋଖରୀରେ ରପ୍ତାନୀଯୋଗ୍ୟ ଚିଙ୍ଗୁଡ଼ି ଚାଷ କରିବା ପାଇଁ ସମସ୍ତ ଜ୍ଞାନ କୌଶଳ ଓ ବୈଷୟିକ ପରାମର୍ଶ ଆଦି ଯୋଗାଇ ଦେବା ଫଳରେ ଚିଙ୍ଗୁଡ଼ି ଚାଷୀ ଆଜି ଏକ ନୂତନ ଆହ୍ୱାନର ମୁକାବିଲା କରିବାକୁ ସମର୍ଥ ହୋଇପାରିଛି।

ଲୁଣି ପାଣି ମାଛ ଚାଷ କାର୍ଯ୍ୟକ୍ରମରେ ୩,୩୦୩ ଜଣ ମତ୍ସ୍ୟ ଚାଷୀ ଉପକୃତ ହୋଇଛନ୍ତି ଏବଂ ୧,୩୧୯ ଜଣ ବ୍ୟକ୍ତିଙ୍କୁ ଆଧୁନିକ ପ୍ରଣାଳୀରେ ଚିଙ୍ଗୁଡ଼ି ଚାଷ ପାଇଁ ତାଲିମ ଦିଆଯାଇଛି। ୧୯୮୯-୯୦ ଆର୍ଥିକ ବର୍ଷରେ ବିଶ୍ୱ ବ୍ୟାଙ୍କ ସହାୟତାରେ ଲୁଣି ପାଣି ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ଜରିଆରେ ୨,୦୦୦ ହେକ୍ଟର ଆୟତନ ବିଶିଷ୍ଟ ଲୁଣି ପାଣି କ୍ଷେତ୍ରର ଉନ୍ନୟନ ପ୍ରସ୍ତାବ ରହିଛି।

ଭାରତ ସରକାରଙ୍କ କେନ୍ଦ୍ରୀୟ ସାହାଯ୍ୟପ୍ରାପ୍ତ କ୍ଷେତ୍ର ବିକାଶ (A. D. A. P.) କାର୍ଯ୍ୟକ୍ରମ ଜରିଆରେ ପୁରୀ ଜିଲ୍ଲାର ବ୍ରହ୍ମଗିରି ଅଞ୍ଚଳର ମୁଦିରଥଠାରେ ୧୫-୫ ହେକ୍ଟର ଆୟତନ ବିଶିଷ୍ଟ ଲୁଣି ପାଣି

କ୍ଷେତ୍ରରେ ୩୯ ଗୋଟି ପୋଖରୀ ଖୋଳାଯାଇଛି ଏବଂ ବାଲେଶ୍ୱର ଜିଲ୍ଲାର ଗଡ଼ପୋଠାରେ ୧୯-୫ ହେକ୍ଟର୍ ଆୟତନ ବିଶିଷ୍ଟ କ୍ଷେତ୍ରରେ ୩୦ ଗୋଟି ପୋଖରୀ ଖୋଳାଯାଇଛି। ଏଗୁଡ଼ିକ କ୍ଷୁଦ୍ରଚାଷୀ ଓ ନାମମାତ୍ର ଚାଷୀମାନଙ୍କୁ ଦୀର୍ଘମିଆଦୀ ଲିଜ୍‌ରେ ପଟ୍ଟା ଦିଆଯାଇଛି।

ଉନ୍ନତ ଚିଙ୍ଗୁଡ଼ି ଯାଆଁଳ ନିରାପଦ ଉତ୍ପାଦନ ପାଇଁ କଟକ ଜିଲ୍ଲାର ପାରାଦୀପଠାରେ ରାଜ୍ୟ ସରକାରଙ୍କ ଆର୍ଥିକ ସହାୟତାରେ ଏକ ଚିଙ୍ଗୁଡ଼ି ଯାଆଁଳ ହ୍ୟାଚେରୀ ପ୍ରତିଷ୍ଠା ହେଉଛି। ସମୁଦ୍ରଜାତ ସାମଗ୍ରୀ ରପ୍ତାନୀ ଉନ୍ନୟନ ପ୍ରାଧିକରଣ (M. P. E. D. A.) ଏବଂ ଫ୍ରାନ୍‌ସ ସରକାରଙ୍କ ସହଯୋଗରେ ଗୋପାଳପୁର ସମୁଦ୍ର ବେଳାରେ ଏକ ୫୦ ନିୟୁତ ଉତ୍ପାଦନକ୍ଷମ ଚିଙ୍ଗୁଡ଼ି ଯାଆଁଳ ହ୍ୟାଚେରୀ ପ୍ରତିଷ୍ଠା କରାଯାଉଛି। ଜାପାନ୍ ସରକାରଙ୍କ ସହାୟତାରେ ପାରାଦୀପଠାରେ ଆଉରି ଗୋଟିଏ ଚିଙ୍ଗୁଡ଼ି ଯାଆଁଳ ହ୍ୟାଚେରୀ ପ୍ରତିଷ୍ଠା ହେବାର ଯୋଜନା ଅଛି। ଚୋରାଡ଼ିଠାରେ U. N. D. P. ଆର୍ଥିକ ସହାୟତାରେ ଏକ ଚିଙ୍ଗୁଡ଼ି ଯାଆଁଳ ହ୍ୟାଚେରୀ ପ୍ରତିଷ୍ଠା କରାଯିବାର ପ୍ରସ୍ତାବ ରହିଛି। ରାଜ୍ୟରେ ବ୍ୟାପକ ଚିଙ୍ଗୁଡ଼ି ଚାଷ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିବାରୁ ଯାଆଁଳ ଚାହିଦା ପୂରଣ କରିବାରେ ଏଗୁଡ଼ିକ ସମର୍ଥ ହେବାର ଆଶା କରାଯାଏ।

ଓଡ଼ିଶା ମତ୍ସ୍ୟ ଯାଆଁଳ ଉନ୍ନୟନ ନିଗମ କର୍ତ୍ତୃକ ମିଳିତ ଜାତିସଂଘ କାର୍ଯ୍ୟକ୍ରମ ଆର୍ଥିକ ସହାୟତାରେ ଆମ ରାଜ୍ୟରେ ଏକ ଚିଙ୍ଗୁଡ଼ି ଖାଦ୍ୟ ଉତ୍ପାଦନ କାରଖାନା ନିର୍ମାଣ କରାଯିବା ପ୍ରସ୍ତାବ ରହିଛି।

## ମତ୍ସ୍ୟ ଚାଷରେ ଆତ୍ମ ନିଯୁକ୍ତି

କି ଶିକ୍ଷିତ କି ଅର୍ଦ୍ଧଶିକ୍ଷିତ ସମସ୍ତଙ୍କର ଧ୍ୟେୟ ଚାକିରୀ। ଆର୍ଥିକ ଉତ୍‌ଥାନ ନିମିତ୍ତ ଏହା ଏକ ସହଜ ଉପାୟ। ସମ୍ପ୍ରତି ବେକାରୀ ସମସ୍ୟା ଯେଉଁଳି ଉତ୍କଟ ରୂପ ନେଇଛି, ଆବଶ୍ୟକୀୟ ଚାକିରୀଟିଏ ଯୋଗାଇ ଦେବାର ଅନିଶ୍ଚିତ ପରିସ୍ଥିତି ସୃଷ୍ଟି ହୋଇଛି। କୌଣସି ସୂତ୍ରରୁ ଚାକିରୀଟିଏ ମିଳିବାର ସମ୍ଭାବନା ମଧ୍ୟ ସୁଦୂର ପରାହତ। ତେବେ ନାନା ଧନ୍ଦା ମାଧ୍ୟମରେ ଜଣେ ଶିକ୍ଷିତ ଯୁବକ ସାମାନ୍ୟ କ୍ଳେଶ ସ୍ୱୀକାର କଲେ କର୍ମ ସଂସ୍ଥାନରେ ସୁଯୋଗ ସୃଷ୍ଟି କରିପାରିବ। ନିଜର ଆୟ ସଙ୍ଗେସଙ୍ଗେ ଅନ୍ୟ କେତେ ଜଣଙ୍କୁ ମଧ୍ୟ କିଛି କିଛି ଆୟ କରିବାରେ ସହାୟତା କରିପାରିବ। ଏଇ ମନେ କରନ୍ତୁ, ମାଛ ଚାଷ ଗୋଟିଏ ଲାଭଦାୟକ ଧନ୍ଦା। ଏକରେ ପୋଖରୀରେ ମଧୁର ପାଣି ମାଛ ଚାଷ କରିପାରନ୍ତି ବା ଏକରେ ଲୁଣି ପାଣି ମାଛ ଚାଷ କରିପାରନ୍ତି। ତେବେ ନିଜର କ୍ଷେତ୍ରଥିଲେ ଆଉ କିଛି ଅସୁବିଧା ନାହିଁ। କ୍ଷେତ୍ର ନଥିଲେ କ୍ଷେତ୍ର ଯୋଗାଇଦେବା ଦିଗରେ ଯେ ପଦକ୍ଷେପ ନିଆ ନଯାଉଛି ସେ କଥା ନୁହେଁ। ତେବେ ସାମାନ୍ୟ ସମୟ ସାପେକ୍ଷ। ମାତ୍ର ଅଳ୍ପ କେତେ ମାସ ମଧ୍ୟରେ ଏହି କାର୍ଯ୍ୟକ୍ରମଟିର ଲୋକପ୍ରିୟତା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି ଏବଂ ବହୁ ଶିକ୍ଷିତ ବେକାର ଯୁବକ ମାଛ ଚାଷକୁ ଜୀବିକା ଭାବେ ଗ୍ରହଣ କରିବାକୁ ଆଗେଇ ଆସିବାର ଦେଖା ଯାଉଛି।

## ବୈଜ୍ଞାନିକ ପ୍ରଣାଳୀରେ ମତ୍ସ୍ୟ ଚାଷରେ ତାଲିମ

ଅଧିକ ଉତ୍ପାଦନ ପାଇଁ ବୈଜ୍ଞାନିକ ପ୍ରଣାଳୀରେ ମତ୍ସ୍ୟ ଚାଷ ଯେଉଁଳି ଅନିବାର୍ଯ୍ୟ ସେହିଭଳି ବୈଜ୍ଞାନିକ ପ୍ରଣାଳୀ ମତ୍ସ୍ୟ ଚାଷ ପାଇଁ କୁଶଳୀ କର୍ମଚାରୀ ଓ ତାଲିମପ୍ରାପ୍ତ ମତ୍ସ୍ୟ ଚାଷୀଙ୍କର ଆବଶ୍ୟକତା ରହିଛି। କାରଣ ମତ୍ସ୍ୟ ଚାଷର ବିକାଶ ନିମିତ୍ତ ଏହାର ମୂଲ୍ୟବୋଧ ଅଧିକ। ମତ୍ସ୍ୟ ବିଭାଗ ଆନୁକୂଲ୍ୟରେ ପୁରୀ ଜିଲ୍ଲାର ବାଲୁଗାଁଠାରେ ସ୍ଥାପିତ ମତ୍ସ୍ୟ ବିଜ୍ଞାନ ପ୍ରଶିକ୍ଷଣ ପ୍ରତିଷ୍ଠାନ (F. T. I.)ରେ ମତ୍ସ୍ୟ ସମ୍ପ୍ରସାରଣ ଅଧିକାରୀ, ମତ୍ସ୍ୟ ନୀରିକ୍ଷକ, ଗବେଷଣାଗାର ସହକାରୀ ଓ ମତ୍ସ୍ୟ ପ୍ରଦର୍ଶକ ପ୍ରଭୃତି କ୍ଷେତ୍ର କର୍ମଚାରୀମାନଙ୍କୁ କର୍ମଶିକ୍ଷା ପାଠ୍ୟକ୍ରମରେ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା କରାଯାଇଛି। ମତ୍ସ୍ୟ ବିଜ୍ଞାନ, ସମ୍ପ୍ରସାରଣର ବିଭିନ୍ନ ପ୍ରଣାଳୀ ବିକାଶମୂଳକ କାର୍ଯ୍ୟକ୍ରମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ, କ୍ଷେତ୍ର ପରିଦର୍ଶନ ଆଦି ବିଷୟ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ। ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ତରଫରୁ ପ୍ରତି ବ୍ଲକ୍‌ରେ ଆଗ୍ରହୀ ମତ୍ସ୍ୟ ଚାଷୀମାନଙ୍କୁ ବୃତ୍ତିଭିତ୍ତିକ ତାଲିମ କାର୍ଯ୍ୟକ୍ରମ ଚାଲିଛି। ଏହି ତାଲିମ ପାଇବା ପରେ ଜଣେ ମତ୍ସ୍ୟ ଚାଷୀ ନିଜ ପୋଖରୀରେ ବୈଜ୍ଞାନିକ ପ୍ରଣାଳୀରେ ମାଛ ଚାଷ କରିପାରୁଛି ଏବଂ ନୂତନ ଜ୍ଞାନ କୌଶଳର ସମ୍ପ୍ରସାରଣ ନିମିତ୍ତ ତାଲିମ କାର୍ଯ୍ୟକ୍ରମ ବହୁ ପରିମାଣରେ ସାହାଯ୍ୟ କରୁଛି।

## ମତ୍ସ୍ୟ ଚାଷରୁ ମିଳୁଥିବା ଆୟ

ମାଛ ଚାଷ କଲେ ବେଶ୍ ରୋଜଗାର କରିହେବ। ପରାମର୍ଶ ଦେଲାବେଳେ ଯେଉଁମାନେ ମାଛ ଚାଷ କରିବାକୁ ଆଗେଇ ଆସୁଛନ୍ତି ବା ଆଗ୍ରହ ପ୍ରକାଶ କରୁଛନ୍ତି, ସେମାନଙ୍କୁ ମାଛ ଚାଷରୁ ମିଳୁଥିବା ଆୟ ବ୍ୟୟର ବାର୍ତ୍ତା ଦେବା ଏକାନ୍ତ ସମୀଚୀନ। ଏକରେ ମଧୁର ଜଳ ଆୟତନ ବିଶିଷ୍ଟ ପୋଖରୀରୁ ବାର୍ଷିକ ଅତି କମ୍‌ରେ ୧,୦୦୦ କିଲୋଗ୍ରାମ୍ ମାଛ ଅାମଦାନୀ ମିଳିବାର ଅଟକଳ କରାଯାଇଛି। ଅତି କମ୍‌ରେ କିଲୋ ପ୍ରତି ୨୦ ଟଙ୍କା ଦରରେ ବିକ୍ରି କରାଗଲେ ୨୦,୦୦୦ ଟଙ୍କାରୁ ସାମଗ୍ରୀ ବାବଦ ବ୍ୟୟ ୪,୦୦୦ ଟଙ୍କା ବାଦ୍ ଦେଲେ ନେଟ୍ ଆୟ ୧୬,୦୦୦ ଟଙ୍କା ମିଳିପାରେ। ସେହିଭଳି ଏକରେ ପୋଖରୀରେ ଲୁଣି ପାଣି ଚିଙ୍ଗୁଡ଼ି ଚାଷ କଲେ ବର୍ଷକୁ ଦି' କ୍ଷେପ ଚାଷ ବାବଦ ୮୦୦ କିଲୋଗ୍ରାମ୍ (କ୍ଷେପକୁ ଅତି କମ୍‌ରେ ୪୦୦ କିଲୋଗ୍ରାମ୍) ଉତ୍ପାଦନ ମିଳିପାରେ। କିଲୋପ୍ରତି ଅତି କମ୍‌ରେ ୭୫ ଟଙ୍କା ଲେଖାଏଁ ବିକ୍ରି ହେଲେ ବିକ୍ରି ବାବଦ ଆୟ ୩୦,୦୦୦ ଟଙ୍କା ମିଳିପାରେ। ଦି' କ୍ଷେପରେ ଖର୍ଚ୍ଚ ବାଦ୍ ୫,୩୨୦ ଟଙ୍କା ବାଦ୍ ଦେଲେ ନେଟ୍ ଆୟ ୨୪,୬୮୦ ଟଙ୍କା ମିଳିପାରେ। ଉଭୟ ଚାଷ ପାଇଁ ନିଜସ୍ୱ କ୍ଷେତ୍ର ଥିଲେ ଏହା ସହଜରେ ଉପଲବ୍ଧ।

## ମତ୍ସ୍ୟ ଚାଷ ବିକାଶର ଭବିଷ୍ୟତ

ଆଜି ସମଗ୍ର ରାଜ୍ୟରେ ମତ୍ସ୍ୟ ଚାଷ କ୍ଷେତ୍ରରେ ଯେଉଁ ଆଗ୍ରହ ଦେଖାଦେଇଛି, ତହିଁରୁ ମତ୍ସ୍ୟ ଚାଷର ସମୃଦ୍ଧ ଭବିଷ୍ୟତର ସୂଚନା ମିଳେ। ନିଜ ନିଜର କ୍ଷେତ୍ର ଥିଲେ ମତ୍ସ୍ୟ ଚାଷ ନିମିତ୍ତ ମିଳୁଥିବା ସୁବିଧା ସୁଯୋଗର ଉପଯୋଗ କରି ଜଣେ ବ୍ୟକ୍ତି ଅନାୟାସରେ ଆତ୍ମନିର୍ଭରଶୀଳ ହେବାରେ କୌଣସି ଅସୁବିଧା ନାହିଁ। ଏକଦା ଯେଉଁ ଗ୍ରାମ ପଞ୍ଚାୟତ ପୋଖରୀଗୁଡ଼ିକ ଅବହେଳିତ ଅବସ୍ଥାରେ ଥିଲା ବା ଗ୍ରାମର ପତିତ ପୋଖରୀଗୁଡ଼ିକ ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରୁଥିଲା, ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ପୋଖରୀରେ ଆଜି ମାଛ ଚାଷ ହେବା ଦେଖାଗଲାଣି। ମାଛ ଚାଷରୁ ଯେ ଗ୍ରାମ ସମୃଦ୍ଧି ଅନାୟାସରେ ସମ୍ଭବ, ତାହା ମଧ୍ୟ ଆମ ରାଜ୍ୟରେ ପ୍ରମାଣିତ କରିଦେଇଛି ଗଞ୍ଜାମ ଜିଲ୍ଲାର ଭୀମ୍ପୁରିରି ପଞ୍ଚାୟତ। ଭୀମ୍ପୁରିରି ଗ୍ରାମଟିର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇପାରୁଛି, ପୋଖରୀରେ ବ୍ୟାପକ ମାଛ ଚାଷରୁ। କେବଳ ଏତିକି ନୁହେଁ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନର ବହୁ ବ୍ୟକ୍ତି ମାଛ ଚାଷ ମାଧ୍ୟମରେ ଉପକୃତ ହେଉଛନ୍ତି। ଏଦିଗରେ ହିତାଧିକାରୀମାନଙ୍କୁ ସମୟାନୁଯାୟୀ ସହାୟତା ଯୋଗାଇ ଦେବାକୁ କାର୍ଯ୍ୟ କରୁଛି ସମନ୍ୱିତ ଗ୍ରାମ ବିକାଶ କାର୍ଯ୍ୟକ୍ରମ, ମତ୍ସ୍ୟ ଚାଷୀ ଉନ୍ନୟନ କାର୍ଯ୍ୟକ୍ରମ, ଲୁଣି ପାଣି ମାଛ ଚାଷ କାର୍ଯ୍ୟକ୍ରମ ଏବଂ ଗ୍ରାମାଞ୍ଚଳ ଦରିଦ୍ରତମ ବ୍ୟକ୍ତିମାନଙ୍କର ଆର୍ଥିକ ଉତ୍‌ଥାନ କାର୍ଯ୍ୟକ୍ରମ। ମୋଟ ଉପରେ :

ମାଛ ଚାଷରେ ଦେଲେ ମନ,
ଦାରିଦ୍ର୍ୟ ହେବ ବିମୋଚନ।

ମତ୍ସ୍ୟ ନିର୍ଦ୍ଦେଶକ, ଓଡ଼ିଶା, କଟକ

# ଓଡ଼ିଶାର ଅଭ୍ୟୁତ୍ଥାନରେ ନାରୀର ସ୍ଥାନ

*କୁମାରୀ ଶୁଭଲକ୍ଷ୍ମୀ ମହାନ୍ତି*

ପଣ୍ଡିତ ଜବାହରଲାଲ୍ ନେହେରୁ 'ଭାରତୀୟ ନାରୀ' ନାମକ ଏକ ପୁସ୍ତକର ମୁଖବନ୍ଧରେ ଜଣେ ଫରାସୀ କବିଙ୍କର ଉକ୍ତିକୁ ଉଦ୍ଧାର କରି ଉଲ୍ଲେଖ କରିଛନ୍ତି ଯେ — କୌଣସି ଏକ ଦେଶକୁ ଉତ୍ତମ ରୂପେ ବିବେଚନା କରିବାକୁ ହେଲେ, ସେ ଦେଶର ନାରୀମାନଙ୍କର ମର୍ଯ୍ୟାଦା କେଉଁ ସ୍ତରରେ ରହିଛି, ତା'ରି ଉପରେ ହିଁ ନିର୍ଭର କରି ବିଚାର କରିବାକୁ ହେବ ।

ପ୍ରାଚୀନ ଯୁଗରୁ ଆରମ୍ଭ କରି ଚଳିତ ଶତାବ୍ଦୀ ଯାଏ ଭାରତ ସମାଜରେ ନାରୀମାନଙ୍କର ବିକାଶ ନିମନ୍ତେ ବିଭିନ୍ନ ପଦକ୍ଷେପ ଗ୍ରହଣ କରି ଆସିଛି । ଆମର ଦୀର୍ଘ ଇତିହାସରେ ସ୍ୱଳ୍ପ କାଳ ପାଇଁ ନାରୀମାନଙ୍କର ସାମାଜିକ ମର୍ଯ୍ୟାଦା କିଛି ମାତ୍ରାରେ ହ୍ରାସ ପାଇଥିଲା, ତଥାପି ବହୁକାଳ ଧରି ଜୀବନର ବିଭିନ୍ନ କ୍ଷେତ୍ରରେ ସେମାନଙ୍କର କୃତିତ୍ୱ ଓ ସାମାଜିକ ପଦ ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରହିଥିବାର ବହୁ ଦୃଷ୍ଟାନ୍ତ ରହିଛି । ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରୁ ବିଭିନ୍ନ କ୍ଷେତ୍ରରେ ନାରୀମାନଙ୍କର କାର୍ଯ୍ୟକଳାପର ପ୍ରସାର ଘଟିଛି ଓ ସେମାନଙ୍କର ସାମାଜିକ ଅଧିକାର ଓ ମର୍ଯ୍ୟାଦାକୁ ସାବ୍ୟସ୍ତ କରିବା ନିମନ୍ତେ ଆଇନଗତ ବ୍ୟବସ୍ଥା ଗ୍ରହଣ କରାଯାଇଛି । ମଧ୍ୟଯୁଗୀୟ ଭାରତ ଓ ତତ୍ପରବର୍ତ୍ତୀ କାଳରେ ଲୁପ୍ତ ହୋଇଥିବା ନାରୀମାନଙ୍କ ସାମାଜିକ ପଦମର୍ଯ୍ୟାଦାର ପୁନରୁଦ୍ଧାର ନିମନ୍ତେ ୧୯୪୭ ମସିହା ପରେ କେତେକ ଆଇନଗତ ଓ ପ୍ରଶାସନିକ ବ୍ୟବସ୍ଥା ଗ୍ରହଣ କରାଯିବା ଫଳରେ ନାରୀମାନେ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବା ସଙ୍ଗେସଙ୍ଗେ ବ୍ୟକ୍ତିଗତ ମର୍ଯ୍ୟାଦାର ସୁରକ୍ଷା ତଥା ସେମାନଙ୍କର ବୃତ୍ତିଗତ ଅଧିକାରକୁ ସର୍ବସମ୍ମତିକ୍ରମେ ସୁପ୍ରତିଷ୍ଠିତ କରାଇବା ନିମନ୍ତେ ବିଶେଷ ଭାବେ ସକ୍ଷମ ହୋଇ ପାରିଛନ୍ତି । ବିଶେଷ କରି ଏ ଦେଶରେ ଶିକ୍ଷିତ ସମ୍ପ୍ରଦାୟଙ୍କ ଦଳିଷ୍ଠ ମତବାଦ ସାମାଜିକ ରକ୍ଷଣଶୀଳତାକୁ ବଦଳାଇବା ପାଇଁ ବାଧ୍ୟ କରିଛି ।

ଆମ ପୁରାଣରେ ବର୍ଣ୍ଣନା କରାଯାଇଛି ଯେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ ଏବଂ ସମସ୍ତ ବଳ ଏବଂ ଓ କ୍ଷମତାର ଅଧିଷ୍ଠାତ୍ରୀ ଦେବୀ ଶକ୍ତି । ସେହିପରି ଅନ୍ନପୂର୍ଣ୍ଣାଙ୍କୁ ଅନ୍ନ ଓ ବିଭିନ୍ନ ପ୍ରକାର ପୁଷ୍ଟିର ଦେବୀ ରୂପେ ବର୍ଣ୍ଣନା କରାଯାଇଛି । ଋଷିକା ଓ ବ୍ରହ୍ମବାଦିନୀମାନଙ୍କ ଦ୍ୱାରା ଋକ୍ ବେଦର ଅଧିକାଂଶ ଶ୍ଳୋକ ରଚିତ ହୋଇଥିଲା । ଏହି ମହିଳାମାନଙ୍କ ମଧ୍ୟରେ ଲୋପାମୁଦ୍ରା, ରୋମାସା, ଅପଲା, କାଦ୍ରୁ, ବିଶ୍ୱବରା, ଘୋଷା, ଜୁହୁ, ଭଗମନ୍ତିନୀ, ଉର୍ବଶୀ, ଯାମୀ, ଇନ୍ଦ୍ରାଣୀ, ସାବିତ୍ରୀ ଓ ଦେବଯାନୀ ପ୍ରଭୃତି ଅନ୍ୟତମା । ଶିକ୍ଷାନୁଷ୍ଠାନମାନଙ୍କରେ କଠୋର ବ୍ରହ୍ମଚର୍ଯ୍ୟ ଶୃଙ୍ଖଳା ଭିତରୁ ବ୍ରହ୍ମବାଦିନୀମାନେ ଉତ୍ତୀର୍ଣ୍ଣ ହେଉଥିଲେ । ଏହି ଅନୁଷ୍ଠାନରେ ମହିଳାମାନେ ମଧ୍ୟ ଶିକ୍ଷାଦାନ ନିମନ୍ତେ ଯୋଗ୍ୟା ବିବେଚିତ ହେଉଥିଲେ । ଋକ୍ ଓ ଯଜୁର୍ବେଦରେ ଉଲ୍ଲେଖ ଅଛି ଯେ ବ୍ରହ୍ମଚର୍ଯ୍ୟ ପାଳନ କରି ଶିକ୍ଷା ସମାପ୍ତ କରିଥିବା କନ୍ୟାମାନଙ୍କ ସହ ସମାନ ଯୋଗ୍ୟତା ଲାଭ କରିଥିବା ଯୁବକମାନଙ୍କୁ ବିବାହ ଦିଆଯିବା ଉଚିତ । ଅଥର୍ବ ବେଦରେ ଉଲ୍ଲେଖ ଅଛି ଯେ କନ୍ୟାମାନେ ବ୍ରହ୍ମଚର୍ଯ୍ୟ ସଂଯତ ଶୃଙ୍ଖଳିତ ଶିକ୍ଷାନୁଷ୍ଠାନରେ ଶିକ୍ଷାଲାଭରୁ ଉତ୍ତୀର୍ଣ୍ଣ ହେଲେ ବିବାହଯୋଗ୍ୟା ହୋଇ ପାରିବେ । ପୁରାଣ ଯୁଗର ନାରୀମାନଙ୍କୁ ସାମାଜିକ ଜୀବନରେ ମଧ୍ୟ ଉଚ୍ଚ ମର୍ଯ୍ୟାଦା ଦିଆଯାଉଥିଲା । ସ୍ତ୍ରୀମାନେ ସମସ୍ତ ପ୍ରକାର ଧର୍ମ କାର୍ଯ୍ୟରେ ସ୍ୱାମୀମାନଙ୍କ ସହ ସମାନ ଅଧିକାର ଭୋଗ କରୁଥିଲେ । ସ୍ତ୍ରୀକୁ ସ୍ୱାମୀର ସହଧର୍ମିଣୀ ବୋଲି ବିଚାର କରାଯାଉଥିବାରୁ ସ୍ତ୍ରୀ ବିନା କୌଣସି ଧର୍ମାନୁଷ୍ଠାନ ବା ଯଜ୍ଞ କାର୍ଯ୍ୟ ସମାହିତ ହୋଇପାରୁ ନଥିଲା । ଋକ୍ ବେଦୀୟ ସମାଜରେ ଏକପତ୍ନୀ ବ୍ରତ କଠୋର ଥିଲା ଏବଂ ନାରୀମାନଙ୍କର ନିରାପତ୍ତା ଓ ପଦମର୍ଯ୍ୟାଦା ରକ୍ଷା କରିବା ଦିଗରେ ଖୁବ୍ କଡ଼ାକଡ଼ି ବ୍ୟବସ୍ଥା ମଧ୍ୟ ଥିଲା ।

ବୈଦିକ ଯୁଗରେ ନାରୀମାନଙ୍କର ଆତ୍ମମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବା ପାଇଁ ବିଭିନ୍ନ ଆଦର୍ଶ ଓ ପରମ୍ପରାର ପ୍ରଚଳନ ଥିଲା । ଏସବୁ ଉପନିଷଦ ଓ ପୁରାଣ ଯୁଗର ପରବର୍ତ୍ତୀ କାଳରେ ଆଇନ୍ ରୂପେ ପ୍ରବର୍ତ୍ତିତ ହୋଇଥିଲା । ବୃହଦାରଣ୍ୟକ ଉପନିଷଦରେ ବର୍ଣ୍ଣିତ ଅଛି ଯେ ପିତା ଗୋଟିଏ ଯଜ୍ଞ ଅନୁଷ୍ଠିତ କରାଇ ଗୋଟିଏ ପଣ୍ଡିତା କନ୍ୟାର କାମନା ମନରେ ପୋଷଣ କରି ଥିଲେ । କୌଶିତକୀ ବ୍ରାହ୍ମଣରେ ପାଠ୍ୟାସ୍ୱସ୍ତି ନାମ୍ନୀ ଜଣେ ମହିଳା ଉତ୍ତର ଭାରତରେ ବିଦ୍ୟାଲାଭ କରି ବିଶେଷ ଜ୍ଞାନର ଅଧିକାରିଣୀ ହୋଇଥିଲେ ଓ ତାଙ୍କୁ ବାକ୍ ପଦବୀରେ ଭୂଷିତା କରାଯାଇଥିଲା ବୋଲି ବର୍ଣ୍ଣନା କରାଯାଇଛି । ଦେବୀ ସପ୍ତଶତୀଙ୍କର ଅନ୍ୟ ନାମ ବାକ୍ । ଏହି ବାକ୍ ରଚନା କରିଥିବା ଗୋଟିଏ ଶ୍ଳୋକ ପରବର୍ତ୍ତୀ କାଳରେ ବେଦାନ୍ତ ଦର୍ଶନର ପ୍ରାଣକେନ୍ଦ୍ର ରୂପେ ବିବେଚିତ ହୋଇଛି । ପୌରାଣିକ ଯୁଗରେ ମୈତ୍ରେୟୀ, ତାରା ଓ ଗାର୍ଗୀ ପ୍ରଭୃତି ମହିଳା ଦାର୍ଶନିକ ବିଦ୍ୟାରେ ବିଶେଷ ଦକ୍ଷତା ଅର୍ଜନ କରିଥିଲେ । ଗାର୍ଗୀ ବିଦେହ ରାଜା ଜନକଙ୍କ ପଣ୍ଡିତ ସଭାରେ ବିଖ୍ୟାତ ବ୍ରହ୍ମବିଦ୍ ଯାଜ୍ଞବଳ୍କ୍ୟ ଋଷିଙ୍କ ସହ ବ୍ରହ୍ମଜ୍ଞାନ ସମ୍ପର୍କିତ ବିତର୍କରେ ଯୋଗ ଦେଇ ତେଜସ୍ୱିନୀ ଯୁକ୍ତି ଉପସ୍ଥାପିତ କରିଥିଲେ । ଶ୍ରୌତ ଓ ଗୃହ୍ୟ ସୂତ୍ରରେ ଉଲ୍ଲେଖ ଅଛି ଯେ

ଧର୍ମ ଉତ୍ସବାଦିରେ ସ୍ୱାମୀମାନଙ୍କ ସହ ସ୍ତ୍ରୀମାନେ ବୈଦିକ ମନ୍ତ୍ର ଉଚ୍ଚାରଣ କରୁଥିଲେ ।

ଆମ ପୁରାଣରେ 'ଅର୍ଦ୍ଧନାରୀଶ୍ୱର' ବର୍ଣ୍ଣନା ରହିଛି । ଏହାର ସାଧାରଣ ଅର୍ଥ ହେଉଛି, ଈଶ୍ୱରଙ୍କର ଅର୍ଦ୍ଧେକ ନାରୀ । କଥିତ ଅଛି, ହିନ୍ଦୁ ଧର୍ମର ତିନି ଦେବତା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମଧ୍ୟରେ ବ୍ରହ୍ମା ସୃଷ୍ଟିକର୍ତ୍ତା, ବିଷ୍ଣୁ ପାଳନକର୍ତ୍ତା ଏବଂ ମହେଶ୍ୱର ସଂହାରକର୍ତ୍ତା । ମହେଶ୍ୱର ତାଙ୍କର ପତ୍ନୀ ପାର୍ବତୀଙ୍କୁ ଏତେ ଭଲ ପାଉଥିଲେ ଯେ ସେ ନିଜର ଅର୍ଦ୍ଧେକ ଶରୀର ପାର୍ବତୀଙ୍କୁ ଦେଇଥିଲେ ଏବଂ ପାର୍ବତୀଙ୍କର ନାରୀ ଶରୀରର ଅର୍ଦ୍ଧେକ ନିଜ ରୂପରେ ଗ୍ରହଣ କରିଥିଲେ । ମହାକବି କାଳିଦାସ ତାଙ୍କର ରଘୁବଂଶ କାବ୍ୟରେ ଲେଖିଛନ୍ତି ଯେ ପୁରୁଷ ଏବଂ ନାରୀ ପରସ୍ପର ଏଭଳି ଭାବରେ ସଂଶ୍ଳିଷ୍ଟ, ଯେପରିକି ବାକ୍ୟ ଏବଂ ଅର୍ଥ । ପୁରାଣରେ ନାରୀ ଜାତି ପ୍ରତି ଏହିପରି ସମାନତା ପ୍ରଦର୍ଶନ କରାଯାଉଥିଲା । ସୀତା, ସାବିତ୍ରୀ ଓ ଦ୍ରୌପଦୀଙ୍କ ଭଳି ନାରୀମାନେ ସମାଜରେ ବିଶେଷ ସମ୍ମାନ ଉପଭୋଗ କରୁଥିଲେ ଏବଂ ସମାଜ ଓ ପରିବାରରେ ସେମାନଙ୍କ ଉଚ୍ଚ ବ୍ୟକ୍ତିତ୍ୱ ଥିଲା । ସାବିତ୍ରୀ ରାଜକନ୍ୟା ହୋଇ ସୁଦ୍ଧା ଏକ କ୍ଷୁଦ୍ର ରାଜ୍ୟର ଜଣେ ରାଜପୁତ୍ରଙ୍କୁ ପତି ରୂପେ ମନୋନୀତ କରିଥିଲେ । ଦ୍ରୌପଦୀ ପାଣ୍ଡବ ସାମ୍ରାଜ୍ୟର ପ୍ରଶାସନିକ କ୍ଷେତ୍ରରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । କୁହାଯାଏ, ଦ୍ରୌପଦୀ ରାଜ୍ୟର ଅର୍ଥ ବିଭାଗ ଦାୟିତ୍ୱରେ ଥିଲେ । କୈକେୟୀ ଓ ଚିତ୍ରାଙ୍ଗଦା ତୁଲ୍ୟ ମହିୟସୀ ମହିଳାମାନେ ଯୁଦ୍ଧ କ୍ଷେତ୍ରରେ ବିଶେଷ କୃତିତ୍ୱ ଅର୍ଜନ କରିଥିଲେ । ମହାଭାଷ୍ୟର ପ୍ରଣେତା ପାତଞ୍ଜଳି 'ଶକ୍ତିକୀ' ବୋଲି ଗୋଟିଏ ଶବ୍ଦ ବ୍ୟବହାର କରିଛନ୍ତି । ଏହାର ଅର୍ଥ, ବର୍ଚ୍ଛା ନିକ୍ଷେପକାରିଣୀ । ମେଗାସ୍ଥିନିସ୍ ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜତ୍ୱ ସମ୍ପର୍କୀୟ ବିବରଣୀରେ ଅସ୍ତ୍ରଧାରିଣୀ ରଣକୁଶଳା ମହିଳାମାନେ ସମ୍ରାଟଙ୍କର ଦେହରକ୍ଷୀ ଥିବାର ଉଲ୍ଲେଖ କରିଛନ୍ତି । ପଣ୍ଡିତ କୌଟିଲ୍ୟ ତାଙ୍କର ଅର୍ଥଶାସ୍ତ୍ରରେ ମହିଳା ସୈନିକମାନେ ଧନୁର୍ତୀର ଦ୍ୱାରା ସଜ୍ଜିତ ହେଉଥିବା ମଧ୍ୟ ବର୍ଣ୍ଣନା କରିଛନ୍ତି । ନାରୀମାନଙ୍କୁ ସମାଜରେ ଉଚ୍ଚସ୍ଥାନ ଦେବା ପାଇଁ ଯେଉଁ ଅର୍ଦ୍ଧ ନାରୀଶ୍ୱର ବର୍ଣ୍ଣନା କରାଯାଇଛି, ତାହା କାଳର ପ୍ରବାହରେ "ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମ୍ ଅର୍ହତି"ରେ ପରିଣତ ହେଲା । ମନୁ କହିଲେ ଯେ ନାରୀମାନେ ବାଲ୍ୟକାଳରେ ପିତାଙ୍କ ଉପରେ ନିର୍ଭର କରିଥାନ୍ତି, ଯୌବନ କାଳରେ ପତିଙ୍କ ଉପରେ ନିର୍ଭର କରନ୍ତି ଏବଂ ପ୍ରୌଢ଼ାବସ୍ଥାରେ ପୁତ୍ରମାନଙ୍କ ଉପରେ ନିର୍ଭର କରନ୍ତି । ତେଣୁ ସମାଜରେ ନାରୀମାନଙ୍କର ବିକାଶ ଲାଗି ସେମାନଙ୍କୁ ସ୍ୱାଧୀନତା ଦିଆଯିବା ଆବଶ୍ୟକ ।

ବୌଦ୍ଧଯୁଗୀୟ ସମାଜରେ ନାରୀମାନେ ଉଚ୍ଚ ସମ୍ମାନ ଲାଭ କରୁଥିଲେ । ସେମାନେ ଭିକ୍ଷୁଣୀ ସଙ୍ଘରେ ନାମ ଲେଖାଉଥିଲେ ବୃଦ୍ଧଗୃହିଣୀମାନେ ସାମାଜିକ ଜୀବନରେ ସ୍ୱତନ୍ତ୍ର ସୁବିଧା ସୁଯୋଗ ଲାଭ କରୁଥିଲେ । ବିଶାଖା, ଅମ୍ବାପାଲୀ ଓ ସୁପ୍ରିୟା ପ୍ରଭୃତି ନାରୀମାନେ ସମାଜ ସେବା କାର୍ଯ୍ୟରେ ବିଶେଷ ଖ୍ୟାତି ଲାଭ କରିଥିଲେ । ଭିକ୍ଷୁଣୀ ସଂଘରେ ଥିବା ବହୁ ଜ୍ଞାନବତୀ ବୃଦ୍ଧଗୃହିଣୀଙ୍କୁ "ଥେରୀ" ନାମରେ ଆଖ୍ୟାତ କରାଯାଉଥିଲା । ଭଗବାନ ବୁଦ୍ଧ ଆଧ୍ୟାତ୍ମିକ ସାଧନାରେ ସିଦ୍ଧି ଲାଭ କରିଥିବା ତେରଜଣ ବିଶିଷ୍ଟ ଥେରୀଙ୍କ ନାମ ଉଲ୍ଲେଖ କରିଛନ୍ତି । ଶ୍ରୀ ଧର୍ମପାଳଙ୍କ "ଥେରୀଗାଥା" ଟୀକାଗ୍ରନ୍ଥରୁ ଜଣାଯାଏ ଯେ ବୌଦ୍ଧଯୁଗୀୟ ସାମାଜିକ ସଂସ୍କାର ଆନ୍ଦୋଳନରେ ସୋମା, ଅନୁପମା, କ୍ଷାନ୍ତିଖେମା, ଚପା, କିଶାଗୌତମୀ ଓ ସୁନ୍ଦରୀ ପ୍ରଭୃତି ବିଶିଷ୍ଟ ନାରୀନେତ୍ରୀ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏହାର ପରବର୍ତ୍ତୀ କାଳରେ ବୌଦ୍ଧଧର୍ମାନୁଯାୟୀ ନାରୀ ଶିକ୍ଷା ଓ ସାଧାରଣ ପ୍ରଗତି ଉପରେ ଗୁରୁତ୍ୱ ଦିଆଯାଉଥିଲା । ସମ୍ରାଟ ଅଶୋକଙ୍କର ଜଣେ ଭଗିନୀ ଶ୍ରୀଲଙ୍କା ଯାଇ ସେଠାରେ ଦର୍ଶନ ଶାସ୍ତ୍ର ସମ୍ପର୍କିତ ଏକ ବିଦ୍ୟାଳୟ ପ୍ରତିଷ୍ଠା କରି ମହିଳାମାନଙ୍କୁ ବିଭିନ୍ନ କଳା ବିଦ୍ୟାରେ ତାଲିମ ଦେଇଥିଲେ । ସମ୍ବଲପୁରର ରାଜା ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କରା ଯେ କେବଳ ବଜ୍ରଯାନରେ ସିଦ୍ଧି ଲାଭ କରିଥିଲେ, ତାହା ନୁହେଁ, ସେ ସହଜଯାନ ନାମକ ଏକ ନୂତନ ଧର୍ମତତ୍ତ୍ୱ ପ୍ରଚାର କରିଥିଲେ ଏବଂ ଉକ୍ତ ତତ୍ତ୍ୱ ବିଷୟକ ଅଦ୍ୱୟ ସିଦ୍ଧି ଗ୍ରନ୍ଥ ରଚନା କରିଥିଲେ । ଉକ୍ତ ବଂଶୀୟା ହୋଇ ଗୁହ୍ୟ ସାଧନା କ୍ଷେତ୍ରରେ ନିଜ ନିଜକୁ ଛଦ୍ମ ନାମରେ ପରିଚିତ କରାଇ ନିଜେ ଧୋବଣୀ, ପିଟେଇ ସଉରୁଣୀ, ଗୁଣ୍ଡୁଚି ଚମାରୁଣୀ ପ୍ରଭୃତି ସାତ ଭଉଣୀ ଅଦ୍ଭୁତ ତନ୍ତ୍ର ଶକ୍ତି ଦ୍ୱାରା ଜନମାନସରେ ଆଲୋଡ଼ନ ସୃଷ୍ଟି କରିଥିଲେ । ଭାରତୀ ନାମ୍ନୀ ଜଣେ ମହିଳା ତାଙ୍କର ସ୍ୱାମୀ ମଣ୍ଡନ ମିଶ୍ର ଓ ଆଦିଶଙ୍କରାଚାର୍ଯ୍ୟଙ୍କ ମଧ୍ୟରେ ହୋଇଥିବା ଶାସ୍ତ୍ର ଯୁଦ୍ଧରେ ଅତି ବିଜ୍ଞତାର ସହ ମଧ୍ୟସ୍ଥି ରୂପେ କାର୍ଯ୍ୟ କରିଥିଲେ । ଭାସ୍କରାଚାର୍ଯ୍ୟଙ୍କ କନ୍ୟା ଲୀଳାବତୀ ଯୁବତୀ ଅବସ୍ଥାରେ ପତିଙ୍କୁ ହରାଇଥିଲେ ମଧ୍ୟ ବିଦ୍ୟାଧ୍ୟୟନ କରି ଗଣିତ ଓ ଦର୍ଶନ ବିଦ୍ୟାରେ ବିଶେଷ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସେହିପରି ଖନା ନାମ୍ନୀ ଅନ୍ୟ ଜଣେ ମହିଳା ଗ୍ରହ ବିଜ୍ଞାନ ବିଶାରଦା ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

ଏହାର ପରବର୍ତ୍ତୀ କାଳରେ ଭାରତ ପାଶ୍ଚାତ୍ୟ ଦେଶଗୁଡ଼ିକ ସମ୍ପର୍କରେ ଆସିବା ଫଳରେ ଭାରତର ଇତିହାସରେ ଏକ ନୂତନ ଅଧ୍ୟାୟ ଖୋଲିଗଲା । ମହିଳାମାନଙ୍କ ଉପରେ ରହିଥିବା ବିଭିନ୍ନ ଧର୍ମଗତ ସାମାଜିକ କଟକଣା ଓ ଅନ୍ଧବିଶ୍ୱାସ ବିଶେଷ ଭାବରେ ସମାଲୋଚିତ ହେଲା । ପାଶ୍ଚାତ୍ୟ ଭାବଧାରାରେ ଅନୁପ୍ରାଣିତ ହୋଇ ସେତେବେଳେ ଯେଉଁ ଧର୍ମ ସଂସ୍କାରକମାନଙ୍କର ଆବିର୍ଭାବ ହୋଇଥିଲା, ସେମାନଙ୍କ ମଧ୍ୟରେ ରାଜା ରାମମୋହନଙ୍କ ନାମ ଉଲ୍ଲେଖଯୋଗ୍ୟ । ମହିଳାମାନଙ୍କ ପଦମର୍ଯ୍ୟାଦା ଅକ୍ଷୁଣ୍ଣ ନିମନ୍ତେ ତାଙ୍କର ଅବଦାନ ଇତିହାସ କହିବ ।

ମହାତ୍ମାଗାନ୍ଧୀ ଯେତେବେଳେ ଭାରତୀୟ ରାଜନୀତି କ୍ଷେତ୍ରରେ ପ୍ରବେଶ କଲେ, ସେହି ସମୟରେ ଭାରତୀୟ ମହିଳାମାନଙ୍କର ଆନ୍ଦୋଳନ ଭିନ୍ନ ରୂପ ନେଲା । ପୂର୍ବରୁ ଚାଲିଥିବା ସାମାଜିକ ସଂସ୍କାର ଆନ୍ଦୋଳନ ସହିତ ଗାନ୍ଧିଜୀ ତାଙ୍କର ରାଜନୈତିକ ସ୍ୱାଧୀନତା ଆନ୍ଦୋଳନ ମିଶାଇ ଦେଇଥିଲେ । ପଣ୍ଡିତ ଜବାହରଙ୍କ ଭାଷାରେ "ଆମ ଦେଶର ମହିଳାମାନଙ୍କ ମଧ୍ୟରେ ଯେଉଁ ନାଟକୀୟ ପରିବର୍ତ୍ତନ ଦେଖାଦେଇଥିଲା, ତାହା ସେହି ଅଦ୍ଭୁତ ତଥା ମହାନ ବିପ୍ଳବୀ ନେତା ମହାତ୍ମା ଗାନ୍ଧୀ ଆଣିଥିଲେ । ଗାନ୍ଧୀ ଯେତେବେଳେ ଡାକରା ଦେଇଥିଲେ, ଦେଶରେ ଅଗଣିତ ନରନାରୀ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରିବା ପାଇଁ ବାହାରି ଆସିଥିଲେ । ଭାରତୀୟମାନେ ନିଜ ହାତରୁ ପୁରାତନ ବେଡ଼ିମାନ ଛିନ୍ନ କରି ଦେଇଥିଲେ ଏବଂ ଆଉଥରେ ଏହା ଯେପରି ତାଙ୍କ ହାତରେ ନ ଲାଗେ ସେଥିଲାଗି ପ୍ରତିଜ୍ଞାବଦ୍ଧ ହୋଇଥିଲେ । ପୂର୍ବାବସ୍ଥାକୁ ଫେରାଇ ନେବା ନିମନ୍ତେ ଇଂରେଜମାନଙ୍କ ପକ୍ଷରୁ ସବଳ ଉଦ୍ୟମ କରାଯାଇଥିଲା, ଏଥିରେ ସନ୍ଦେହ ନାହିଁ, କିନ୍ତୁ ସେମାନଙ୍କର ସେ ଉଦ୍ୟମ ବ୍ୟର୍ଥ ହୋଇଯାଇଥିଲା ।"

ଆମ ଦେଶ ସ୍ୱାଧୀନତା ଲାଭ କରିବାର ପରବର୍ତ୍ତୀ କାଳରେ ନାରୀ ଜାତିର ସାମାଜିକ ବିକାଶ ଲାଗି ଉଦ୍ୟମ ଆରମ୍ଭ ହେଲା । ବର୍ତ୍ତମାନର ସରକାର ୧୯୮୦ ମସିହାରେ କ୍ଷମତାକୁ ଆସିବା ପରେ ନାରୀ ଶକ୍ତି ବିକାଶ ନିମନ୍ତେ ଅନେକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ସ୍ତ୍ରୀ ଶିକ୍ଷା କ୍ଷେତ୍ରରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଛି । ୧୯୮୧ ମସିହା ହିସାବରୁ ଜଣାଯାଏ ଯେ ଓଡ଼ିଶାରେ ପୁରୁଷମାନଙ୍କ ସାକ୍ଷର ସଂଖ୍ୟା ଶ... ଏବଂ ମହିଳା ସାକ୍ଷର ସଂଖ୍ୟା ଶତକଡ଼ା ୨୨ । ସେହିପରି ଭାରତବର୍ଷରେ ପ୍ରଥମ କରି ଆମ ରାଜ୍ୟରେ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ପର୍ଯ୍ୟନ୍ତ ଝିଅପିଲାମାନେ ବିନା ଦରମାରେ ପଢ଼ିବା ସୁବିଧା ରଖାଯାଇଛି । ମହିଳା କଲେଜଗୁଡ଼ିକରେ ଛାତ୍ରୀ ନିବାସ ଓ ଅନ୍ୟାନ୍ୟ ସ୍ୱତନ୍ତ୍ର ସୁବିଧା ପ୍ରଦାନ କରାଯାଉଛି । ପୂର୍ବରୁ ମାତ୍ର ... ମହାବିଦ୍ୟାଳୟ ଥିଲା । ଏବେ ଏହାର ସଂଖ୍ୟା ୪୦ରୁ ଅଧିକ ହୋଇଛି । ... ବାଳିକା ହାଇସ୍କୁଲ ସଂଖ୍ୟା ୫ ଗୁଣକୁ ବଢ଼ିଛି । ଆଦିବାସୀମାନଙ୍କ ପାଇଁ ପ୍ରତି ପଞ୍ଚାୟତରେ ବୋର୍ଡିଂ ସ୍କୁଲ ସ୍ଥାପନ କରାଯାଉଛି । ଆଜି ... ବିଶ୍ୱବିଦ୍ୟାଳୟରେ ପୁଅଙ୍କ ଅପେକ୍ଷା ଝିଅଙ୍କ ସଂଖ୍ୟା ଅଧିକ । ... ରାଜ୍ୟ ସରକାର ନାରୀ ଶିକ୍ଷା ପ୍ରତି ଗୁରୁତ୍ୱ ଦେବା ଫଳରେ ଏବଂ ...

ସୁବିଧା ସୁଯୋଗ ଯୋଗାଇ ଦେବା ଦ୍ୱାରା ଘରେ ଘରେ ପ୍ରତିଟି ପରିବାରରେ ଝିଅବୋହୁ ପାଠ ପଢ଼ିବା ପାଇଁ ଆଗେଇ ଆସୁଛନ୍ତି ।

ମହିଳାମାନେ ଶିକ୍ଷା ଲାଭ ପରେ ଯେପରି ନିଯୁକ୍ତି ପାଇପାରିବେ ସେ ଦିଗରେ ସରକାର ଆମର ବହୁ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ରାଜ୍ୟର ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ କେବଳ ମହିଳାମାନଙ୍କୁ ଶିକ୍ଷୟିତ୍ରୀ ରୂପେ ନିଯୁକ୍ତି ଦେବା ପାଇଁ ସରକାର ଅଗ୍ରାଧିକାର ଦେଇଛନ୍ତି । ଏହି ପଦକ୍ଷେପ ଫଳରେ ୧୯୮୩ରୁ ୧୯୮୬ ମଧ୍ୟରେ ମାଧ୍ୟମିକ ଶିକ୍ଷାନୁଷ୍ଠାନଗୁଡ଼ିକରେ ୨,୬୮୩ ଜଣ ଶିକ୍ଷୟିତ୍ରୀ ନିଯୁକ୍ତି ପାଇଛନ୍ତି । ମନୋନୟନ ପରୀକ୍ଷାରେ ପ୍ରଥମେ ମହିଳାମାନଙ୍କୁ ବଛାଯିବା ପରେ ବଳକା ସ୍ଥାନମାନଙ୍କରେ ପୁରୁଷମାନଙ୍କୁ ନିଯୁକ୍ତି ଦିଆଯିବ ବୋଲି ରାଜ୍ୟ ସରକାର ନୀତିଗତ ଭାବେ ନିଷ୍ପତ୍ତି ନେଇଛନ୍ତି । ରାଜ୍ୟର ପ୍ରୌଢ଼ଶିକ୍ଷା କେନ୍ଦ୍ରଗୁଡ଼ିକ ମଧ୍ୟରୁ ଶତକଡ଼ା ୫୦ ଭାଗ ମହିଳାମାନଙ୍କ ପାଇଁ ସଂରକ୍ଷିତ ରହିଛି । ଏହି କେନ୍ଦ୍ରଗୁଡ଼ିକର ନିରୀକ୍ଷଣ ଦାୟିତ୍ୱ ମହିଳାମାନଙ୍କ ଉପରେ ନ୍ୟସ୍ତ ହୋଇଛି । ରାଜ୍ୟ ସରକାର ଇତି ମଧ୍ୟରେ ମହିଳାଙ୍କ ନିମନ୍ତେ ୫ ହଜାର ଅଣଫର୍ମାଲ୍ ଶିକ୍ଷା କେନ୍ଦ୍ର ଖୋଲିବା ପାଇଁ କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦେଇଛନ୍ତି । ଏଥିରୁ ୨,୯୬୫ କେନ୍ଦ୍ର ପାଇଁ ମଞ୍ଜୁରୀ ମିଳିଛି । ଆଉ ଅଧିକ କେନ୍ଦ୍ର ଖୋଲିବା ପାଇଁ କେନ୍ଦ୍ର ସରକାରଙ୍କଠାରୁ ଅନୁମୋଦନ ମିଳିବ ବୋଲି ଆଶା କରାଯାଉଛି । ଏହି କେନ୍ଦ୍ରଗୁଡ଼ିକର ଦାୟିତ୍ୱରେ ମହିଳାମାନେ ରହିବେ ବୋଲି ସରକାର ସ୍ଥିର କରିଛନ୍ତି ।

ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗରେ ଥିବା ବିଭିନ୍ନ ପଦ ପଦବୀରେ ୧୦ ହଜାର ୭୨୭ ଜଣ ମହିଳାଙ୍କୁ ନିଯୁକ୍ତି ଦିଆଯାଇଛି । ଏହା ବ୍ୟତୀତ ୧,୧୨୦ ଜଣ ମହିଳାଙ୍କୁ ବିଶେଷ ଶିକ୍ଷା ଓ ପ୍ରଶିକ୍ଷଣ ଦିଆଯାଇଛି ଏବଂ ୩୧ ହଜାର ୨୧୯ ଜଣ ମହିଳା ପ୍ରସୂତି ସହାୟିକା ରୂପେ ପ୍ରଶିକ୍ଷଣ ଲାଭ କରିଛନ୍ତି । ଏଥି ମଧ୍ୟରୁ ୫ ହଜାର ୮୨୬ ଜଣଙ୍କୁ ମାସିକ ୫୦ ଟଙ୍କା ଭତ୍ତା ଦେଇ ଏ. ଏନ୍. ଏମ୍.ମାନଙ୍କୁ ସାହାଯ୍ୟ କରିବା ପାଇଁ ନିଯୁକ୍ତି ଦିଆଯାଇଛି ।

କେବଳ ମହିଳା କର୍ମଚାରୀଙ୍କୁ ନେଇ ରାଉରକେଲାଠାରେ ଏକ ମହିଳା ଥାନା ଖୋଲାଯାଇଛି । କଟକ ସମେତ ରାଜ୍ୟର ମୁଖ୍ୟ ସ୍ଥାନମାନଙ୍କରେ ଅନୁରୂପ ଥାନା ଖୋଲିବା ପାଇଁ ପଦକ୍ଷେପ ନିଆଯାଇଛି । ବନ୍ଦିନୀମାନଙ୍କର କଲ୍ୟାଣ କାର୍ଯ୍ୟକ୍ରମରେ ମହିଳାମାନଙ୍କୁ ନିଯୁକ୍ତି ଦେବାପାଇଁ ସ୍ଥିର ହୋଇଛି । କନେଷ୍ଟବଲ୍, ଗୃହରକ୍ଷୀ ଓ ବେସାମରିକ ପ୍ରତିରକ୍ଷା ବାହିନୀରେ ମହିଳାମାନଙ୍କୁ ଗ୍ରହଣ କରିବା ପାଇଁ ମଧ୍ୟ ଆମ ସରକାର ନିଷ୍ପତ୍ତି ନେଇଛନ୍ତି ।

ଗ୍ରାମଗୋଷ୍ଠୀ ଓ ପଲ୍ଲୀ ପୁନର୍ଗଠନ ବିଭାଗ ଅଧୀନରେ ୨୧ ହଜାର ୩୮ ଜଣ ମହିଳା ବିଭିନ୍ନ ପଦବୀରେ ନିଯୁକ୍ତି ପାଇଛନ୍ତି ଏବଂ ବିଭିନ୍ନ ଧନ୍ଦାମୂଳକ କାର୍ଯ୍ୟରେ ମହିଳାମାନଙ୍କୁ କର୍ମକୁଶଳ କରିବା ପାଇଁ ଏକ ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କରାଯାଇଛି । ପର୍ଯ୍ୟଟନ ଓ ସଂସ୍କୃତି ବିଭାଗରେ କେତେକ ପଦବୀରେ ମହିଳା ପ୍ରାର୍ଥୀମାନଙ୍କୁ ନିଯୁକ୍ତି କ୍ଷେତ୍ରରେ ପ୍ରାଧାନ୍ୟ ଦିଆଯିବା ପାଇଁ ମଧ୍ୟ ସ୍ଥିର ହୋଇଛି । ଘରୋଇ ଶିଳ୍ପ ପ୍ରତିଷ୍ଠାନ ଓ ଆତ୍ମ ନିଯୁକ୍ତି କ୍ଷେତ୍ରରେ ମଧ୍ୟ ଶତକଡ଼ା ୧୦ ଭାଗ ସ୍ଥାନ ସଂରକ୍ଷଣ ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ସହରର ବସ୍ତି ଅଞ୍ଚଳରେ ବିଭିନ୍ନ ଅର୍ଥକରୀ ଧନ୍ଦାରେ ମହିଳାମାନଙ୍କୁ ପ୍ରଶିକ୍ଷଣ ଦେଇ ପରିବାରର ଆୟ ବୃଦ୍ଧିରେ ସହାୟତା ପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏମାନଙ୍କ ମଧ୍ୟରୁ ୧୫୭ ଜଣ ମହିଳାଙ୍କୁ ୬ଟି ଜିଲ୍ଲାରେ ବାଲ୍‌ବାଡ଼ି ଶିକ୍ଷୟିତ୍ରୀ ରୂପେ ନିଯୁକ୍ତି ଦିଆଯାଇଛି ଏବଂ ୧,୯୩୫ ଜଣ ମହିଳାଙ୍କୁ ବିଭିନ୍ନ ଧନ୍ଦା ମାଧ୍ୟମରେ ୩ ଲକ୍ଷ ୬୨ ହଜାର ୭୭୦ ଟଙ୍କା ଋଣ ସୂତ୍ରରେ ଯୋଗାଇ ଦିଆଯାଇଛି ।

ବୈଷୟିକ ଶିକ୍ଷା କ୍ଷେତ୍ରରେ ମହିଳାଙ୍କ ଦକ୍ଷତା ବୃଦ୍ଧି ଲାଗି ରାଜ୍ୟ ସରକାର ମହିଳା ପଲିଟେକ୍‌ନିକ୍ ଓ ଆଇ. ଟି. ଆଇ. ପ୍ରତିଷ୍ଠା କରିଛନ୍ତି । ବର୍ତ୍ତମାନ ରାଜ୍ୟର ୧୦୦ଟି ପଲ୍ଲୀସେବା କେନ୍ଦ୍ରରେ ୩ ହଜାର ମହିଳାଙ୍କୁ ନିଯୁକ୍ତି ଦିଆଯାଇଛି ।

ରାଜ୍ୟର ବିଭିନ୍ନ କର୍ମ ନିଯୋଜନ କାର୍ଯ୍ୟାଳୟରେ ନାମ ରେଜିଷ୍ଟ୍ରେସନ୍ କରିଥିବା ୫୫ ହଜାର ୩୦୧ ଜଣ ମହିଳା ବର୍ତ୍ତମାନ ସୁଦ୍ଧା ବିଭିନ୍ନ କ୍ଷେତ୍ରରେ ନିଯୁକ୍ତି ପାଇଛନ୍ତି । ଏହାକୁ ଅଧିକ ସମ୍ପ୍ରସାରିତ କରିବା ଓ ଆତ୍ମନିଯୋଜନ କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ଦେବା ପାଇଁ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଛନ୍ତି ।

ଆମ ରାଜ୍ୟ ସରକାର ବିଧବାମାନଙ୍କ ପାଇଁ ପେନ୍‌ସନ୍‌ର ବ୍ୟବସ୍ଥା କରିଛନ୍ତି । ତଥାପି ଅନେକ ଅର୍ଥାଭାବ ଥିବା ମହିଳା ରହିଛନ୍ତି । ସେଥି ନିମନ୍ତେ ସରକାର ପ୍ରତ୍ୟେକ ଅସହାୟା ସ୍ତ୍ରୀଲୋକଙ୍କୁ ୧ ହଜାର ଟଙ୍କା ସାହାଯ୍ୟ ଦେଉଛନ୍ତି । ଏହାଦ୍ୱାରା ସେମାନେ ଘରେ ବସି ଛୋଟ ଛୋଟ ବ୍ୟବସାୟ କରି ନିଜର ସଂସାର ଚଳାଇ ପାରିବେ । ଏପରି ୨ ଲକ୍ଷ ପରିବାରକୁ ସାହାଯ୍ୟ ଦେବାର ନିଷ୍ପତ୍ତି ନିଆଯାଇଛି । ୧୯୮୮-୮୯ ବର୍ଷରେ ୧ ଲକ୍ଷ ମହିଳାଙ୍କୁ ଏହି ସାହାଯ୍ୟ ଦିଆଯାଇଛି ।

ଆମ ଦେଶର ସମ୍ବିଧାନ ପ୍ରମାଣିତ କରିଛି ଯେ ପୁରୁଷ ଓ ମହିଳା ସମସ୍ତେ ସମାନ । ସମାଜ ପ୍ରତି ଉଭୟ ପୁରୁଷ ଓ ମହିଳାଙ୍କର ସମାନ ଦାୟିତ୍ୱ, ଅଧିକାର ଓ କର୍ତ୍ତବ୍ୟ ରହିଛି । ଏହି ସମାନତାକୁ ଯଦି ଆମେ ପ୍ରତିଷ୍ଠିତ କରାଇ ପାରିବା, ତେବେ ଆମ ଦେଶ ବିଶ୍ୱରେ ଶ୍ରେଷ୍ଠ ଆସନ ଅଳଙ୍କୃତ କରି ପାରିବ ।

କନିଷ୍ଠ ଅନୁବାଦ ସହାୟିକା
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର ।



# ଓଡିଶାର ଗର୍ବ ଚିଲିକା

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି

ବାସ୍ତବରେ ଚିଲିକା କଥା ଭାବିଲେ ମନକୁ ଆସେ ସେହି କବିବର ରାଧାନାଥଙ୍କ ଚିଲିକା କାବ୍ୟ । ସତରେ କ'ଣ ସେ ନୁହେଁ ! କେତେ କବି, କେତେ ଭାବୁକ ତଥା ପ୍ରାବନ୍ଧିକ କ'ଣ ସେ ବର୍ଣ୍ଣନା କରି ପାଉଛନ୍ତି ତାହା କଳ୍ପନା ବାହାରେ । ତଥାପି ଚିଲିକା ସେହିପରି ତା'ର ଗରିମା ପ୍ରକାଶ କରୁଛି । ବୃଦ୍ଧି ହେଉଛି କ୍ରମଶଃ ତା'ର ଶ୍ରୀ, ତା'ର ଅପରୂପ ଏବଂ ଅନୁପମ ସୌନ୍ଦର୍ଯ୍ୟ ।

ଓଡିଶାର ୩ଟି ହ୍ରଦ ଚିଲିକା, ଅଂଶୁପା ଓ ସର ମଧ୍ୟରୁ ଚିଲିକାର ସ୍ଥାନ ଶୀର୍ଷ । ସମୁଦ୍ର ଉପକୂଳ ଅଞ୍ଚଳରେ ଗୋଟିଏ ଅଂଶ କିଛି ମାତ୍ରାରେ ଭିତରକୁ ପଶିଯାଇ ସୃଷ୍ଟି କରିଛି ଲୁଣିମିଶା ମଧୁର ଜଳ ପୂର୍ଣ୍ଣ ଏ ହ୍ରଦ । ଆଉ ବଙ୍ଗୋପସାଗର ଜଳରେ ଏହାର ବପୁ ହୋଇଥାଏ ସର୍ବଦା ପ୍ଲାବିତ । ହ୍ରଦଟିର ସାଗର ସହ ଏପରି ଅନ୍ତରଙ୍ଗ ବନ୍ଧୁ ପରି ସମ୍ପର୍କ ଯେ ଚିଲିକାର ଜଳଭାଗର ପରିମାଣ ବର୍ଷସାରା ଅଭାବ ନ ଥାଏ । ଭୌଗଳିକ ଦୃଷ୍ଟିକୋଣରୁ ଚିଲିକା ଏକ ହ୍ରଦ ନୁହେଁ । କାରଣ ସ୍ଥଳଭାଗ ମଧ୍ୟସ୍ଥ ଜଳଭାଗ ଏହାର ପରିସର ନୁହେଁ । ଏକ ଅପରିସର ପଥ ମଧ୍ୟ ଦେଇ ସାଗରର ଜଳ ହ୍ରଦକୁ ପ୍ରବେଶ କରୁଥିବାରୁ ଏହା ଲାଗୁନ୍ (Lagoon) ଭାବରେ ପରିଚିତ । ସବୁଠାରୁ ଖୁସିର କଥା କେବଳ ଓଡିଶାରେ କାହିଁକି ସମଗ୍ର ଭାରତବର୍ଷରେ ଏହା ହେଉଛି ବୃହତ୍ତମ ଲାଗୁନ୍ । ଅଧିକାର କରୁଛି ଓଡିଶା ଉପକୂଳର ପୂର୍ବଭାଗକୁ ପ୍ରାୟ ୧୧୦୦ ବର୍ଗ କି.ମି. ପରିମିତ ସ୍ଥାନ । ଆଉ ତା'ର ଚାରିପଟେ ଘେରି ରହିଛି ଛୋଟ ବଡ ଅନେକ ଗ୍ରାମ । ସେଗୁଡିକ ହେଲା ଘିଅଖୋଲା, ଲମ୍ବୋଦରପୁର, ରାହାଣବେଲୀ, ଖାଲ୍ଲୁଆ କୋଣତି, ପଥରଜଟା, ବରଗା, ବରଳାବନ୍ଧ ଓ ହରିପୁର ଇତ୍ୟାଦି । ନୀରବ ଜଳରାଶି ଚତୁଃପାର୍ଶ୍ୱସ୍ଥ କୋଳାହଳମୟ ଗ୍ରାମଗୁଡିକ ଆଣିଥାଏ ଅନେକ ଆନନ୍ଦ ଆଉ ନିର୍ଜୀବ ଚିଲିକାକୁ କରିଥାଏ ଜୀବନ୍ତମୟ ।

ଚିଲିକା ଏକ ବହୁରୂପୀ । ଋତୁ ପର୍ଯ୍ୟାୟ କ୍ରମେ ଚିଲିକାର ରୂପ ଭିନ୍ନଭିନ୍ନ । ବର୍ଷା ଋତୁରେ ମୁଷଳଧାରାର ବର୍ଷା ଚିଲିକାର ଗର୍ଭକୁ କରିଥାଏ ଉଚ୍ଛୁଳୁ । ଅସମ୍ଭବ ହୋଇଉଠେ ଏ ସମୟରେ ଚିଲିକାର ଥଳକୂଳ । କେବଳ ପରିଦର୍ଶକ କାହିଁକି ନାବିକ ମଧ୍ୟ ଭୟଭୀତ ହୁଏ ତା'ର ନାବ ନେଇ ଚିଲିକା ବକ୍ଷରେ ଯାତ୍ରା କରିବା ପାଇଁ । ଆଉ ଶୀତ ଓ ଶରତ୍ ଋତୁରେ ଚିଲିକା ହସିଉଠେ ଅନେକ ପ୍ରକାର ପରିବ୍ରାଜୀ ପକ୍ଷୀ (migratory birds) ଙ୍କର ସମାରୋହରେ । ଯେଉଁ ପକ୍ଷୀଗୁଡିକ ପାର୍ବତୀୟ ଉଚ୍ଚ ଅଞ୍ଚଳରେ ଗ୍ରୀଷ୍ମ ଋତୁ ଅତିବାହିତ କରିଥାଆନ୍ତି, ସେମାନେ ଶୀତ ଋତୁରେ ସମତଳ ଅଞ୍ଚଳ ବା ନିମ୍ନ ପାହାଡିଆ ଅଞ୍ଚଳ (Lower foot hills) କୁ ଯାତ୍ରା କରିଥାଆନ୍ତି । ଭାରତରେ ଏ ପ୍ରକାର ପରିବ୍ରାଜନ (migration) ଅତି ସାଧାରଣ । ପକ୍ଷୀମାନେ ଅନେକ ଦୂରରୁ ଘଣ୍ଟାକୁ ପ୍ରାୟ ୪୮ ରୁ ୬୦ କି.ମି. ପର୍ଯ୍ୟନ୍ତ ଏବଂ କ୍ୱଚିତ୍ ୮୦ କି.ମି. ବେଗରେ ନିଜର ଲକ୍ଷ୍ୟସ୍ଥଳକୁ ଆସିଥାଆନ୍ତି । ଏମାନଙ୍କ ମଧ୍ୟରୁ କେତେକ ଦିନବେଳେ ଓ ଆଉ କେତେକ ରାତ୍ରୀ ଓ ଦିବା ସମୟରେ ଯାତ୍ରା କରିଥାଆନ୍ତି, କିନ୍ତୁ ରାତ୍ରୀରେ ସେମାନଙ୍କ ବେଗ ପ୍ରାୟ ବୃଦ୍ଧି ପାଇଥାଏ । ସାଧାରଣପାଗ (weather) ବିନା ଯଦି କିଛି ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ, ତେବେ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ବିଳମ୍ବ ଘଟିଥାଏ । ଶୀତ ପ୍ରାରମ୍ଭରେ ଚିଲିକାକୁ ଚାଟକ (swallow) , ମକ୍ଷିକା (fly-catcher) ୱାରବ୍ଲର୍ (warbler) ଓ ନଈକୂଳିଆ ଜଳଚର ପକ୍ଷୀ (shore birds ବା aquatic birds) ଇତ୍ୟାଦି ଦଳଗତଭାବେ ବିଭିନ୍ନ ପ୍ରକାର କୂଜନ (fluttering, twittering ଓ calling) କରି ଆସେକେ ଉଡି ଆସିଥାଆନ୍ତି । ଏମାନଙ୍କର ଏ ପ୍ରକାର ପରିବ୍ରାଜନ ଉଡି କଥାରେ କହିଲେ ମନରେ ଉନ୍ମାଦ ସୃଷ୍ଟି ନ କରିପାରେ, ସ୍ୱଚକ୍ଷୁରେ ଦେଖିଲେ ହିଁ ଜାଣିହେବ ଓ ଅନୁଭବ କରିହେବ ଯେ

ଚିଲିକା ସତରେ କି ପ୍ରକାର କିମିଆ ସୃଷ୍ଟି କରିଛି ଯେ ପ୍ରତ୍ୟେକ ବର୍ଷ ଲକ୍ଷ ଲକ୍ଷ ପକ୍ଷୀମାନଙ୍କୁ ନିଜ କ୍ରୋଡକୁ ଚୁମ୍ବକ ପରି ଆକର୍ଷଣ କରୁଛି । ଏହାର ଏକ ଛୋଟ ଉଦାହରଣ ଦିଆଯାଇପାରେ । କୋଇଲି (cuckoo)କୁ ଗ୍ରୀଷ୍ମ ଋତୁ ବିନା ଅନ୍ୟଋତୁରେ ତା'ର ଉପସ୍ଥିତି ଜାଣି ହୁଏନାହିଁ । ଆଉ ଗ୍ରୀଷ୍ମ ପ୍ରାରମ୍ଭରେ ଆମ୍ର ବୃକ୍ଷଗୁଡିକରେ ବକୁଳ ଧାରଣ ସମୟରେ ଏମାନଙ୍କର ପରିବ୍ରାଜନ ହୋଇଥାଏ । ଏହା ଉପଲବ୍ଧି କରିହୁଏ ବସନ୍ତ ଋତୁରେ ତାଙ୍କର ମଧୁର କାକଳି ଯୋଗୁଁ । ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଚିଲିକାକୁ ପକ୍ଷୀଗୁଡିକ କାହିଁକି ଆସିଥାଆନ୍ତି ? ଏତେ ପରିଶ୍ରମ କରି ହଜାର ହଜାର ମାଇଲ୍ ଆସିବାର ତାତ୍ପର୍ଯ୍ୟ କ'ଣ ?? ଅବଶ୍ୟ ପରିବ୍ରାଜନ ଅତି ଉଦ୍ଦେଶ୍ୟପୂର୍ଣ୍ଣ । ପ୍ରଥମତଃ, ଅତ୍ୟଧିକ ଥଣ୍ଡା ପ୍ରାଦୁର୍ଭାବରୁ ରକ୍ଷା ପାଇବା, ଦ୍ୱିତୀୟତଃ ସୀମିତ ପରିମାଣ ଖାଦ୍ୟରୁ ନିଜକୁ ବଞ୍ଚାଇବା ଓ ତୃତୀୟତଃ ଗ୍ରୀଷ୍ମ ତାପରୁ ରକ୍ଷା କରି ଅଣ୍ଡା ଦେବା ପାଇଁ ହିଁ ପକ୍ଷୀଗୁଡିକ ବୁଲିଯାଇଥାନ୍ତି । ଅବଶ୍ୟ ପର୍ଯ୍ୟଟକମାନଙ୍କ ଚିଲିକା ପରିଦର୍ଶନର କାରଣ ହେଉଛି ହ୍ରଦ ଉପରେ ପକ୍ଷୀମାନଙ୍କର ସମାବେଶ ।

ଚିଲିକାର ଅନ୍ୟ ଏକ ଆକର୍ଷଣ ହେଲା ତନ୍ମଧ୍ୟସ୍ଥ ଛୋଟବଡ ପାହାଡ – ଢଟିଆ, ଭାଲେରୀ, ସୋଲରୀ, ମାମୁଁ ଭଣଜା, ବଢେଇହଗା ଓ କାଳିଜାଈ ଇତ୍ୟାଦି । କବି ରାଧାନାଥଙ୍କ ବର୍ଣ୍ଣିତ କାଳିଜାଈର ଇତିହାସ ଅଦ୍ୟାପି ପ୍ରସ୍ଫୁଟିତ ଓ ଜୀବନ୍ତ । ଆଉ ସେହି ଐତିହାସିକ କାଳିଜାଈର ସନ୍ଧ୍ୟାକାଳୀନ ସୂର୍ଯ୍ୟାସ୍ତ ସମୟରେ ଗଗନ ଓ ତା'ର ପ୍ରତିବିମ୍ବିତ ଦୃଶ୍ୟ ଚିଲିକା ଜଳରେ କେତେ ଯେ ମନୋହର ତାହା ଯେ ଅଙ୍ଗେ ନିଭାଇଥିବ, ସେ ହିଁ କେବଳ ଜାଣିଥିବ । ଆଉ ବଢେଇ ହଗା ନାମଟି ଅତି ବିଚିତ୍ର ଜଣାଯାଏ । ପାହାଡଟି ହ୍ରଦର ମଝିରେ ଅବସ୍ଥିତ ଥିବାରୁ ପକ୍ଷୀମାନଙ୍କର ବୈଠକ କେନ୍ଦ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନଙ୍କର ମଳତ୍ୟାଗର ଫଳସ୍ୱରୂପ ପାହାଡଟି ଦୂରରୁ ଶ୍ୱେତବର୍ଣ୍ଣ ଦୃଶ୍ୟ ହେଉଥିବାରୁ ଏପରି ନାମକରଣ ହୋଇଛି । ଉଦ୍ଭିଦ ଓ ପ୍ରାଣୀବିତ୍‌ମାନେ ଏ ପାହାଡଗୁଡିକର ପ୍ରାଣୀ ଓ ଉଦ୍ଭିଦ (fauna and flora) ପାଇଁ ଆକୃଷ୍ଟ ହୋଇଥାଆନ୍ତି । ବିଭିନ୍ନ ପକ୍ଷୀମାନଙ୍କର ବ୍ୟବହାର ଓ ପରିବ୍ରାଜନ ସମ୍ବନ୍ଧରେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିଥାଆନ୍ତି ।

ଏ ତ ସବୁ ଗଲା ଚିଲିକାର ଚତୁଃପାର୍ଶ୍ୱସ୍ଥ ପରିସ୍ଥିତି । ଏହାର ଅଭ୍ୟନ୍ତର ଯଦି ଝୁନ୍‌ଝିନ୍ କରାଯାଏ, ତେବେ ପ୍ରକୃତରେ ଜଣାପଡିବ ଚିଲିକାର ମହତ୍ତ୍ୱ କେତେ ! ଚିଲିକା ତା'ର ବଡ଼ଖ ମାଛ, କଙ୍କଡା ଓ ଚିଙ୍ଗୁଡି ଆଦି ସବୁଠାରୁ ପ୍ରସିଦ୍ଧ । ନଦୀଧାରା ଓ ସମୁଦ୍ର ଜଳର ମିଶ୍ରଣ ଏପରି ଏକ ଜଳୀୟ ପରିବେଶ (aquatic environment ବା aquatic ecosystem)ସୃଷ୍ଟି କରୁଛି ଯେ ତାହା ଅନେକ ପ୍ରକାର ଜୀବମାନଙ୍କର ଅଭିବୃଦ୍ଧିରେ ସହାୟକ ହେଉଛି । ମାଛଗୁଡିକ ମଧ୍ୟରେ ଭେକଟି, ଖୁରାଣ୍ଟି, ବାଙ୍ଗି, ଶଙ୍ଖା ଓ ଖୋହଲା ଆଦି ମାଛ ଅତି ସୁସ୍ୱାଦୁଯୁକ୍ତ । ଚିଲିକା କୂଳରେ ଅବସ୍ଥିତ ବାଲୁଗାଁ ଏକ ମଧ୍ୟକେନ୍ଦ୍ର ହୋଇଥିବାରୁ ଏଠାରୁ ବିଭିନ୍ନ ସ୍ଥାନକୁ ମଧ୍ୟ ରପ୍ତାନୀ କରାଯାଇ ଅନେକ ଅର୍ଥ ଉପାର୍ଜନ କରାଯାଉଛି । ବର୍ଷକୁ ପ୍ରାୟ ୩,୮୦୦ ଟନ୍ ମାଛ ଏ ସ୍ଥାନରୁ ରପ୍ତାନୀ କରାଯିବାର ଜଣାଯାଏ ।

ଚିଲିକା ବାସ୍ତବରେ ଏପରି ଏକ ସ୍ଥାନ ଯାହାକି ଏକ ପକ୍ଷରେ ପ୍ରାକୃତିକ ସୌନ୍ଦର୍ଯ୍ୟ, କିମ୍ବଦନ୍ତୀ ଓ ଇତିହାସର ଗନ୍ତାଘର ତାହାନୁହେଁ, ଏହା ବୈଜ୍ଞାନିକମାନଙ୍କର ଏକ ଉପଯୁକ୍ତ ଗବେଷଣା ସ୍ଥଳ । ସାଧାରଣ ଲୋକଙ୍କ ପାଇଁ ଜୀବିକା ସ୍ଥଳ ହେବା ସ୍ଥଳେ ଅନ୍ୟମାନଙ୍କ ପାଇଁ ଏକ ପର୍ଯ୍ୟଟକ କେନ୍ଦ୍ର (tourist center) ରୂପେ ଗଣ୍ୟ କରାଯାଉଛି । ମନୁଷ୍ୟର ଜଞ୍ଜାଳ ଓ କର୍ମମୟ ଜୀବନକୁ ଆନନ୍ଦ, ଉଲ୍ଲାସ ଓ ଖୁସିମୟ କରିବାରେ ଚିଲିକାର ଅବଦାନ କମ୍ ନୁହେଁ । ସତରେ ଚିଲିକା ପ୍ରକୃତିର ଏକ ଅନବଦ୍ୟ ସୃଷ୍ଟି । ସୌନ୍ଦର୍ଯ୍ୟ ପିପାସୁର ତୃଷ୍ଣା ମେଣ୍ଟାଣୀ, ଗବେଷକର ବିଜ୍ଞାନାଗାର, ଧୀବରମାନଙ୍କର ଜୀବନ, ବିହଙ୍ଗମର କ୍ରୀଡା ଓ ପ୍ରଜନନ କେନ୍ଦ୍ର ଆଉ କବି, ଭାବୁକ, ଲେଖକ, ପ୍ରାବନ୍ଧିକ ଓ ପ୍ରକୃତି ଉପାସକମାନଙ୍କର ଲେଖନୀ ଚାଳନା ସ୍ଥଳ ତଥା ଭକ୍ତମାନଙ୍କର ଭଗବତୀ ପୀଠସ୍ଥଳ । ତେବେ ବାକୀ ରହିଲେ କିଏ ? ପ୍ରତ୍ୟେକ ପ୍ରକାର ବ୍ୟକ୍ତି ବିଶେଷକୁ ସନ୍ତୋଷ କରିବାରେ ଏ ସାମାନ୍ୟ ହ୍ରଦ ବାଛବିଚାର ବା ଭେଦାଭେଦ କରିନାହିଁ । ସତରେ ଏହା କ'ଣ ଗୌରବର ବିଷୟ ନୁହେଁ ?

ବିଭିନ୍ନ ଦୃଷ୍ଟିକୋଣରୁ ଏ ସ୍ଥାନର ଗୁରୁତ୍ୱ ଓ ମହତ୍ତ୍ୱ ଉପଲବ୍ଧି କରି ଆମ ରାଜ୍ୟ ସରକାର ଏ ପ୍ରାକୃତିକ ସ୍ଥାନକୁ ଉପଯୁକ୍ତ ଭାବରେ ସୁରକ୍ଷିତ, ସଂରକ୍ଷିତ ଓ ସୁସଜ୍ଜିତ କରିବାରେ ଅଧିକ ଧ୍ୟାନ ଦେବା ସଙ୍ଗେସଙ୍ଗେ ଅଧିକରୁ ଅଧିକ ପର୍ଯ୍ୟଟକମାନଙ୍କର ସୁବିଧା ନିମିତ୍ତ ସୁବ୍ୟବସ୍ଥା ଅବଲମ୍ବନ କରୁଛନ୍ତି । ଓଡିଶାର ବିଭିନ୍ନ କୋଣରେ ଯେତେଗୁଡିଏ ପବିତ୍ର, ତୀର୍ଥ ଓ କାରୁକାର୍ଯ୍ୟପୂର୍ଣ୍ଣ ସ୍ଥାନ ସବୁ ରହିଛି, ତନ୍ମଧ୍ୟରୁ ଚିଲିକାର ସ୍ଥାନ ଅନ୍ୟତମ । ତା'ର କାରଣ ଏକ ପକ୍ଷରେ ମନୁଷ୍ୟକୁ ଖାଦ୍ୟ ଯୋଗାଇବା ସ୍ଥଳରେ ଅନ୍ୟ ପକ୍ଷରେ ଏହା ମନୁଷ୍ୟର ଜୀବନକୁ ସରସ, ସୁନ୍ଦର ଓ କମନୀୟ କରିବାରେ ଏକ ବସ୍ତୁ ହୋଇପାରୁଛି । ତେଣୁ ଏହାଠାରୁ ବଳି ଆଉ ଗୌରବର ବିଷୟ ଓଡିଶା ପାଇଁ କ'ଣ ଥାଇପାରେ ।

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର,
ଭୁବନେଶ୍ୱର-୭୫୧୦୦୪ ।

"ହେ ମୋର ଚିର ପୁଣ୍ୟ ତୀର୍ଥ ଜାଗରେ ଧୀରେ
ଏହି ଭାରତର ମହାମାନବର ସାଗର ତୀରେ ।"

ରବିନ୍ଦ୍ରନାଥ ଠାକୁର

# ରାମଶିଆଳି

ଡକ୍ଟର୍ ସୁଧାକର କର

ଇଣ୍ଡିଅନ୍ ଜାକ୍ସ ଓଡିଶାର ବିଭିନ୍ନ ପ୍ରାନ୍ତରରେ ରାମଶିଆଳ, ବାଲ୍ଗ, ଖଗବାଘ, ନିମିଟିବାଘ, ଚେତବାଘ ନାମରେ ନାମିତ । ଏହା ବଣ କୁକୁର/ବଳିଆ କୁକୁର ପରିବାରର ଏବଂ ଏକ ଶିକାରୀ ପ୍ରାଣୀ । ଏହି ବନ୍ୟ ଜନ୍ତୁଟି ହିଂସ୍ର ଏବଂ ଖୁବ୍ ଚତୁର । ଏମାନେ ହାଇନା କିମ୍ବା ହେଟାବାଘ କିମ୍ବା ହୁଣ୍ଡା ନୁହନ୍ତି । କେତେକଙ୍କ ଧାରଣା ହାଇନା ଓ ବଣୁଆ କୁକୁରର ଔରଷରୁ ରାମଶିଆଳିର ସୃଷ୍ଟି । କିନ୍ତୁ ଏହା ସମ୍ପୂର୍ଣ୍ଣ ଭ୍ରମ ଧାରଣା । ଇଣ୍ଡିଅନ୍ ଜାକ୍ସ କିମ୍ବା ରାମଶିଆଳି ବିଲୁଆମାନଙ୍କଠାରୁ ବଡ ଧରଣର କିନ୍ତୁ ହେଟାଠାରୁ ଛୋଟ । ଦେହର ରଙ୍ଗ ଧୂସର । ମୁହଁ ବିଲୁଆ ମୁହଁ ପରି, କିନ୍ତୁ ଟିକେ ଲମ୍ବା । ବାହାଣ ଖୁବ୍ ଚଞ୍ଚଳ । ପଛଗୋଡ ତୁଳନାରେ ଏମାନଙ୍କ ଆଗ ଗୋଡ ଖୁବ୍ ଶକ୍ତ ଓ ମୋଟା । ଦେଖିବାକୁ ବଡ ଆଲ୍‌ସିସିଅନ୍ କୁକୁର ଭଳି । ଉଚ୍ଚତା 2 ଫୁଟ୍‌ରୁ 2 ଫୁଟ୍ 6 ଇଞ୍ଚ୍, ଲମ୍ବ 3 ଫୁଟ୍ 6 ଇଞ୍ଚ୍ ଏବଂ ଲାଙ୍ଗୁଡର ଲମ୍ବ 14 ଇଞ୍ଚ୍ ରୁ 16 ଇଞ୍ଚ୍ । ଓଜନ 15 କେ.ଜି.ରୁ 20 କେ.ଜି. ।

ରାମଶିଆଳି ଯୋଡିଯୋଡି ହୋଇ କିମ୍ବା ଛୋଟଛୋଟ ଦଳରେ ରହନ୍ତି । ଅତି କେଶରେ ଗୋଟିଏ ଦଳରେ 4–5 ଗୋଟି ରାମଶିଆଳି ରହନ୍ତି ।

ସମଗ୍ର ଭାରତରେ ରାମଶିଆଳିମାନଙ୍କର ସଂଖ୍ୟା ପ୍ରାୟ ଏକ ହଜାର ହେବ । ଆମ ଓଡିଶାରେ ଏମାନଙ୍କ ସଂଖ୍ୟା ସଠିକ୍ କେତେ ହେବ ତାହା ସୁମାରି ହୋଇନାହିଁ । କିନ୍ତୁ ବହୁ ପୂର୍ବରୁ ଏହାର ସ୍ଥିତି ଜଣାଥିଲା । ଅନ୍ୟାନ୍ୟ ରାଜ୍ୟ ଅପେକ୍ଷା ବିହାରରେ ରାମଶିଆଳି ସଂଖ୍ୟା ଅଧିକ ।

ରାମଶିଆଳି ସାଧାରଣତଃ ବୁଦୁବୁଦିଆ ଜଙ୍ଗଲ ଥିବା ପାହାଡିଆ ସ୍ଥାନମାନଙ୍କରେ ଦେଖିବାକୁ ମିଳେ । ଏହା ବଡ ଜଙ୍ଗଲରେ ମଧ୍ୟ ରହିଥାଏ ।

ରାମଶିଆଳିର ଘ୍ରାଣଶକ୍ତି ଖୁବ୍ ପ୍ରଖର । ଫଳରେ ଶିକାର ସନ୍ଧାନ ଅନ୍ୱେଷଣରେ ପାଇପାରନ୍ତି । ଶିକାର ଧରିବାରେ ଏମାନେ ଖୁବ୍ ପଟୁ । ଶିକାର ଧରି କ୍ଷିପ୍ର ଗତିରେ ଡିଆଁମାରି ଚାଲିଯିବାରେ ଏମାନେ ଖୁବ୍ ଅଭ୍ୟସ୍ତ । ଏକା କୁଦାକେ ଏମାନେ 15 ରୁ 20 ଫୁଟ୍ ଲମ୍ବ ଡିଆଁ ମାରନ୍ତି । ଠେକୁଆ, ବଣକୁକୁଡା, ଗୁଣ୍ଡୁଚି ମୂଷା ଏବଂ ଚଢେଇ ଏମାନଙ୍କର ଖାଦ୍ୟ । ଖାଦ୍ୟ ଅଭାବ ହେଲେ, ଏମାନେ ଛେଳି, ଘୁଷୁରୀ, ମେଣ୍ଢା, ଏବଂ ଛୋଟ ବାଛୁରୀଙ୍କୁ ଶିକାର କରିଥାନ୍ତି । ସଦ୍ୟ ମାଂସ ନ ପାଇଲେ ପଚା ମାଂସ ମଧ୍ୟ ଖାଇଥାନ୍ତି । ଥରକେ 5 ରୁ 10 କିଲୋଗ୍ରାମ୍ ମାଂସ ଖାଇ ପାରନ୍ତି ।

ଶିକାରକୁ ଖୁବ୍ ଚତୁରତାର ସହିତ ବେକ ପଛରୁ ଧରି କ୍ଷିପ୍ର ଗତିରେ ନିରାପଦ ସ୍ଥାନ ଯଥା : ପାହାଡ ଖୋଲ, ବୁଦୁବୁଦିଆ ଜଙ୍ଗଲ ଭିତରକୁ ଚାଲି ଯାଆନ୍ତି । ଏମାନେ ସାଧାରଣତଃ ନିଶାଚର । ସନ୍ଧ୍ୟା ହେଲେ ଖାଦ୍ୟ ସନ୍ଧାନରେ ବାହାରନ୍ତି । ଜଙ୍ଗଲରେ ଖାଦ୍ୟର ଅଭାବ ହେଲେ ଗାଁ ଭିତରକୁ ଆସି ପଛପଟ ନିଛାଟିଆ ସ୍ଥାନ, ପାଳଗଦା, ଗଛଉହାଡ ଏବଂ ପନିପରିବା ବଗିଚାରେ ଲୁଚିରହି ଶିକାର କରନ୍ତି । ସୁଯୋଗ ପାଇଲେ ଛୋଟ ପିଲାମାନଙ୍କୁ ଝାମ୍ପିମାରି ଉଠାଇ ନେବାର ଦୃଷ୍ଟାନ୍ତ ବହୁତ ଅଛି । ଦୁଇବର୍ଷରୁ ଚାରି ବର୍ଷର କୁନି ପିଲା ଏମାନଙ୍କର ବେଶୀ ଶିକାର ହୋଇଥାନ୍ତି । ଏମାନେ ୫ ବର୍ଷରୁ ଊର୍ଦ୍ଧ୍ୱ ଏବଂ ପ୍ରାପ୍ତ ବୟସ୍କ ଲୋକଙ୍କୁ ଆକ୍ରମଣ କରନ୍ତି ନାହିଁ । କାରଣ ଓଜନ ହେତୁ ବଡପିଲାମାନଙ୍କୁ ଧରି କୁଦାମାରି ପଳେଇବାର ଶକ୍ତି ନାହିଁ । କିନ୍ତୁ ମନୁଷ୍ୟ ମାଂସ ଏମାନଙ୍କର ପ୍ରକୃତ ଖାଦ୍ୟ ନୁହେଁ । କେତେକ ରାମଶିଆଳି ମଲା ମଣିଷ, ମୁର୍ଦାର୍ ପଡୁଟିର ସ୍ୱାଦ ଚାଖି ମଣିଷ ମାଂସ ପ୍ରତି ଆକୃଷ୍ଟ ହୋଇ ପଡନ୍ତି ।

ସାଧାରଣତଃ ଦେଖାଯାଉଛି, ଏମାନେ ଗ୍ରୀଷ୍ମ ଋତୁରେ ବେଶୀ ଶିକାର କରିଥାନ୍ତି । ବର୍ଷା ଦିନେ ଏମାନଙ୍କ ପ୍ରାଦୁର୍ଭାବ ପରିଲକ୍ଷିତ

ହୁଏନାହିଁ । ଏହାର କାରଣ, ଗ୍ରୀଷ୍ମ ଋତୁରେ ଏମାନେ ଛୁଆ ଜନ୍ମ କରିଥାଆନ୍ତି । ଥରକେ 3–4 ଗୋଟି ଛୁଆ ଜନ୍ମ କରନ୍ତି ଏବଂ ଛୁଆଙ୍କୁ ଖାଦ୍ୟ ଯୋଗାଇବା ପାଇଁ ସେମାନେ ବେଶି ଶିକାର କରିଥାନ୍ତି । ପ୍ରକୃତ ଖାଦ୍ୟର ଅଭାବ ହେଲେ ଗାଁ ଭିତରକୁ ପଶି ମଣିଷ ଶିଶୁଙ୍କୁ ଶିକାର କରନ୍ତି ।

ଅଳ୍ପ କେତୋଟି ବର୍ଷ ପୂର୍ବରୁ ବିହାରର ହଜାରିବାଗ୍ ଜିଲ୍ଲାରେ ରାମଶିଆଳିମାନଙ୍କର ଉତ୍ପାତ ଲୋକମାନଙ୍କୁ ଆତଙ୍କିତ କରି ଦେଇଥିଲା । ପାଞ୍ଚ ବର୍ଷ ଭିତରେ ୫୨ ଟି ଛୋଟପିଲା ରାମଶିଆଳିମାନଙ୍କର ଶିକାର ହୋଇଥିଲେ । ବିଗତ କେତେ ମାସ ହେବ ଏହି ରାମଶିଆଳିମାନଙ୍କର ପ୍ରାଦୁର୍ଭାବ ଯୋଗୁଁ ଆମ ଓଡିଶାର କେତେକ ସ୍ଥାନରେ ଲୋକମାନେ ଆତଙ୍କିତ ହୋଇ ପଡିଛନ୍ତି । ଖବରକାଗଜ ଓ ବିଭିନ୍ନ ପତ୍ରପତ୍ରିକାରେ ଶିଶୁମାଂସଲୋଭୀ ରାମଶିଆଳିର ଆତଙ୍କ ବିଷୟରେ ବହୁତ ତଥ୍ୟ ପ୍ରକାଶ ପାଉଛି । କଟକ ଜିଲ୍ଲା ଅନ୍ତର୍ଗତ ଆଠଗଡ ସବ୍‌ଡିଭିଜନ୍‌ର ନରସିଂହପୁର ବ୍ଲକ୍ ଅଞ୍ଚଳରେ ରାମଶିଆଳିମାନେ ଛୋଟଛୋଟ ପିଲାମାନଙ୍କୁ ମା କୋଳରୁ ଭିଡି ନେଇ ଖାଇଯାଇଥିବା ଘଟଣା ସମସ୍ତଙ୍କୁ ଚକିତ କରି ଦେଇଛି । 1972 ମସିହା ବନ୍ୟପ୍ରାଣୀ (ସଂରକ୍ଷଣ) ଆଇନ୍ ଅନୁଯାୟୀ ଯଦିଓ ରାମଶିଆଳିମାନଙ୍କୁ ମାରିବା ମନା, ତଥାପି କେତେଟା ଶିଶୁମାଂସ ଭକ୍ଷୀ ରାମଶିଆଳିଙ୍କୁ ନିପାତ କରାଗଲାଣି । କିନ୍ତୁ ଏଥି ସହିତ କେତେ ଗୁଡିଏ ନିରୀହ ଜୀବ ତଥା– ବଣ କୁକୁର, ଶିଆଳ ଏବଂ ହେଟାବାଘ ପ୍ରଭୃତି ଶିକାରୀମାନଙ୍କ ଶିକାର ହେଉଛନ୍ତି । ଜଙ୍ଗଲ ବିଭାଗ କର୍ମଚାରୀ, ପୋଲିସ୍ ଓ ସ୍ଥାନୀୟ ଗ୍ରାମବାସୀମାନଙ୍କ ସହାୟତାରେ ଏହି ଶିକାରୀ ଜନ୍ତୁଙ୍କୁ ଧରିବା ଏବଂ ଦରକାର ହେଲେ ମାରିବା ପାଇଁ ଅପ୍ରାଣ ଉଦ୍ୟମ ଚଳାଇଛନ୍ତି । ଏହା ଭିତରେ ଦୁଇଗୋଟି ରାମଶିଆଳିଙ୍କୁ ଧରାଯାଇ ନନ୍ଦନକାନନ ଚିଡିଆଖାନାରେ ରଖାଯାଇଛି ।

ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ – ବଣ ଜଙ୍ଗଲରେ ଆଗରୁ ରାମଶିଆଳି ଥିଲେ କିନ୍ତୁ ଗାଁମାନଙ୍କରେ ତ ପ୍ରବେଶ କରୁ ନ ଥିଲେ କିମ୍ବା ଏ ପ୍ରକାର ଆତଙ୍କ ସୃଷ୍ଟି କରୁ ନ ଥିଲେ । କିନ୍ତୁ ଏହା ଭ୍ରମାତ୍ମକ । ପୁରୁଖା ଲୋକଙ୍କ ଅନୁସାରେ ରାମଶିଆଳି ମା କୋଳରୁ ପିଲା ନେଇଯିବା କଥା ବହୁତ ପୁରାତନ । ଦିନକୁ ଦିନ ଜଙ୍ଗଲ ଲୋପ ପାଇବା ସଙ୍ଗେସଙ୍ଗେ ରାମଶିଆଳିମାନଙ୍କର ପ୍ରକୃତ ଖାଦ୍ୟର ନିଶ୍ଚିତ ଭାବେ ଘୋର ଅଭାବ ଦେଖା ଦେଇଛି । ଏଣୁ ଏମାନଙ୍କର ଦୌରାତ୍ମ୍ୟ ବଢିଛି । ଫଳରେ ରାମଶିଆଳିମାନେ ଜଙ୍ଗଲ ଛାଡି ଶିକାର ଅନ୍ୱେଷଣରେ ଗାଁ ଭିତରକୁ ପଶି ଆସୁଛନ୍ତି ଓ ଛୋଟଛୋଟ ଶିଶୁ ଓ ପଶୁ ଶିକାର କରୁଛନ୍ତି ।

ଗବେଷଣା ଅଧିକାରୀ,
ମୁଖ୍ୟ ବନ୍ୟପ୍ରାଣୀ ତତ୍ତ୍ୱାବଧାରକଙ୍କ କାର୍ଯ୍ୟାଳୟ,
ଭୁବନେଶ୍ୱର–୭୫୧୦୦୧ ।



# "ଶାବର ଶ୍ରୀକ୍ଷେତ୍ର ଓ ଜଗନ୍ନାଥ" ବିଷୟରେ ମତାମତ

କଟକ,
ତା ୧୦.୭.୮୯।

ପ୍ରିୟ ଅଜିତ୍ ବାବୁ ,

ଜୁଲାଇ ୧୯୮୯ରେ ପ୍ରକାଶିତ ଉତ୍କଳ ପ୍ରସଙ୍ଗର ରଥଯାତ୍ରା ବିଶେଷାଙ୍କରେ ଶ୍ରୀ ଗଣେଶ ପ୍ରସାଦ ପରିଡାଙ୍କର ଲେଖା 'ଶବର ଶ୍ରୀକ୍ଷେତ୍ର ଓ ଜଗନ୍ନାଥ'ରେ ଅବତାରଣା କରାଯାଇଥିବା ଗଳ୍ପଟି ସମ୍ପୂର୍ଣ୍ଣ କାଳ୍ପନିକ ଓ ସେଥିରେ ବାସ୍ତବତା ଆଦୌ ନାହିଁ । ଏହ ଅଲୌକିକ କାହାଣୀରେ ମୁଁ ସନ୍ଦେହ ଧାରଣ କରିବା ସତ୍ତ୍ୱେ ଶ୍ରୀ ପରିଡା ମୋ ନାମକୁ ଅସମୀଚିନ ଭାବେ ସଂଶ୍ଳିଷ୍ଟ କରିଛନ୍ତି । କୋରାପୁଟର ଶ୍ରୀଶ୍ରୀ ମନ୍ଦିର ପରିଚାଳନା ସଂସ୍ଥାର ସମ୍ପାଦକ ଏହି ଲେଖା ଉପରେ ଏକ ପ୍ରତିବାଦ ପତ୍ର ଉତ୍କଳ ପ୍ରସଙ୍ଗର ସମ୍ପାଦକଙ୍କୁ ଦେଇ ତାହାର ନକଲ ଆପଣଙ୍କ ପାଖକୁ ଓ ମୋ ପାଖକୁ ଦେଇଅଛନ୍ତି ।

ଆପଣଙ୍କୁ ଅନୁରୋଧ ଯେ ଉତ୍କଳ ପ୍ରସଙ୍ଗର ପରବର୍ତ୍ତୀ ପ୍ରକାଶନରେ ଏହି ଲେଖା ବିଷୟରେ ଏକ ସଷ୍ଟିକରଣ ଦେବା ବ୍ୟବସ୍ଥା କରିବେ । ଇତି ।

ସଞ୍ଜୀବ ଚନ୍ଦ୍ର ହୋତା

ଶ୍ରୀ ଅଜିତ୍ କୁମାର ତ୍ରିପାଠୀ,
ନିର୍ଦ୍ଦେଶକ, ଲୋକସମ୍ପର୍କ ଓ ସୂଚନା ବିଭାଗ,
ଓଡିଶା ସରକାର, ଭୁବନେଶ୍ୱର ।

## ମାନନୀୟ ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ ମହୋଦୟ ,

ମହାଶୟ ,

ମୁ ଜାଣିବାକୁ ପାଇଲି ଅପଣଙ୍କ ଉତ୍କଳ ପ୍ରସଙ୍ଗ ଜୁଲାଇ ୧୯୯ ରଥଯାତ୍ରା ବିଶେଷାଙ୍କରେ ମୋ ଲିଖିତ ଶ୍ରୀ ଜଗନ୍ନାଥ ଓ ଶବର ଶ୍ରୀକ୍ଷେତ୍ର ଗଳ୍ପର ସତ୍ୟତା ବିଷୟରେ ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା, ଆଇ.ଏ.ଏସ୍. ବିରୁଦ୍ଧମତ ପୋଷଣ କରି ଚିଠି ଲେଖିଛନ୍ତି । ମୁଁ ୧୯୮ରେ ଯେତେବେଳେ ଶାବର ଶ୍ରୀକ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥ ମନ୍ଦିରର ପାର୍ଶ୍ୱମନ୍ଦିର ପ୍ରତିଷ୍ଠା ହୋଇଥିଲା ସେହି ସମୟରେ ମନ୍ଦିର କର୍ମକର୍ତ୍ତାଙ୍କ ନିମନ୍ତ୍ରଣରେ କୋରାପୁଟ ଯାଇଥିଲି ଓ ସେତେବେଳେ ସେଠାରେ କେତେକ ଆଦିବାସୀଙ୍କଠାରୁ ଅପଣଙ୍କ ପ୍ରକାଶ୍ୟ ଗଳ୍ପଟି ଶୁଣିଥିଲି । ଶୁଣିଲା ପରେ ସେହି ଗଳ୍ପକୁ ଶ୍ରୀ ହୋତାଙ୍କୁ କହି ତାହାର ସତ୍ୟାସତ୍ୟ ବୁଝିବାକୁ ଚେଷ୍ଟା କରିଛି । ସେ କେବଳ ତାଙ୍କ ନାମ ଓ ପ୍ୟାରୀବାବୁଙ୍କ ନାମ ଗଳ୍ପ ଭିତରକୁ ନ ଆଣିବାକୁ କହିଥିଲେ । ସେତେବେଳେ ମୁଁ ମନେ କରିଥିଲି, ତାଙ୍କର ସେଭଳି କହିବାର ଉଦ୍ଦେଶ୍ୟ ହେଉଛି ଅହମିକାଠାରୁ ଦୂରେଇ ରହିବା । ସେଥିପାଇଁ ସେ ମନ୍ଦିରର କର୍ମକର୍ତ୍ତାଙ୍କ ମଧ୍ୟରେ ମଧ୍ୟ ନିଜକୁ ସାମିଲ୍ କରି ନାହାନ୍ତି । ଯାହା ହେଉ ଲୋକଙ୍କଠାରୁ ଯାହା ଶୁଣିଥିଲି ତାହାକୁ ଗଳ୍ପ ମାଧ୍ୟମରେ ରୂପ ଦେଇଛି । ଗଳ୍ପ ଲେଖିଲା ବେଳେ ସତ୍ୟକୁ ମଞ୍ଜିରୂପେ ଗ୍ରହଣ କରାଯାଏ । ମଞ୍ଜି ଛୋଟ ହୋଇ ଫଳ ରସାଳ ହେଲେ ତାହା ଲୋକଙ୍କ ଦ୍ୱାରା ଆଦୃତ ହୋଇଥାଏ । ତାହାହିଁ ମୁଁ କରିଛି । ଏହି ଘଟଣା ସହିତ ଶ୍ରୀ ହୋତା ଜଡିତ ନ ଥାଇ ପାରନ୍ତି ଏବଂ ତାଙ୍କୁ ସଂପୃକ୍ତ କରିବା ମୋର ଭୁଲ ହୋଇପାରେ । ଲୋକମାନେ ଯାହା କହିଥିଲେ ତାହା ଯଦି ଶ୍ରୀ ହୋତାଙ୍କ ସମୟରେ ନ ଘଟିଥାଏ ସେଥିପାଇଁ ମୁଁ ତାଙ୍କ ପାଖରେ କ୍ଷମା ମାଗି ନେଉଛି । କିନ୍ତୁ ଏହା ସତ୍ୟ, ଶ୍ରୀରାମ ତାଙ୍କ ଅନୁଜ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହିତ କୋରାପୁଟ ଅଞ୍ଚଳକୁ ଯାଇଥିଲେ । ତାହାର ସାକ୍ଷ୍ୟ ଦେବାକୁ ବର୍ତ୍ତମାନେ ଉଲଗ୍ନ ରହିବାର କିମ୍ବଦନ୍ତୀ, ଦଣ୍ଡକାରଣ୍ୟ, ଶବେରୀ ନଦୀ, ମାଲ୍ୟଗିରି, ବାଲ୍ମୀକି ଜାତି ପ୍ରଭୃତି ବିଦ୍ୟମାନ । କେବଳ ଏତିକି ନୁହେଁ, ରାମାୟଣ ଯୁଗର ପମ୍ପାସର ସମ୍ପାସର ନାମରେ ନାମିତ ହୋଇଥିବା ୯ମ ଶତାବ୍ଦୀର ଏକ ତମ୍ବାପତ୍ର ସନନ୍ଦରୁ ଜଣାଯାଏ । ତାହା ଗଞ୍ଜାମ ଜିଲ୍ଲା ନିକଟରେ ଥିବା ଐତିହାସିକ ଡଃ ସତ୍ୟନାରାୟଣ ରାଜଗୁରୁ ଧାରଣ କରନ୍ତି । ଜଣେ ପ୍ରଶାସକଙ୍କଠାରୁ ଶୁଣିଛି ତାହା ଫୁଲବାଣୀର ଘୋର ଜଙ୍ଗଲ ମଧ୍ୟରେ ଅବସ୍ଥିତ । ବାଲ୍ମୀକି ଯୁଗରେ କାହିଁକି ଊନବିଂଶ ଶତାବ୍ଦୀରେ ମଧ୍ୟ ଗୋଦାବରୀ ନଦୀ ଓଡିଶାର ଦକ୍ଷିଣ ସୀମା ଥିଲା । ଇଂରେଜମାନଙ୍କୁ ବିରୋଧ କରିବାରୁ ଗଞ୍ଜାମଠାରୁ ମାନ୍ଦ୍ରାଜ୍ ପ୍ରଦେଶ ଶାସନଭୁକ୍ତ ବ୍ରିଟିଶରମାନେ କରିଥିଲେ । ବର୍ତ୍ତମାନର ଓଡିଶା ୧୯୩୬ ମସିହାରେ କୁଳବୃଦ୍ଧ ମଧୁସୂଦନ ଦାସ ଅଦିଙ୍କ ଚେଷ୍ଟାରୁ ଗଠିତ ହୋଇଛି । ବର୍ତ୍ତମାନ କୋରାପୁଟର ଦକ୍ଷିଣସୀମା ଗୋଦାବରୀ ନିକଟରେ ଅଛି । ବାଲ୍ମୀକି ତାଙ୍କର ରାମାୟଣ ଅରଣ୍ୟ କାଣ୍ଡ ୬୪–୧/୧୦ରେ ଲେଖିଛନ୍ତି, ସୀତାଙ୍କୁ ରାବଣ ନେଇଗଲା ପରେ ଲକ୍ଷ୍ମଣ ଏବଂ ଶ୍ରୀରାମ ଦଣ୍ଡକାରଣ୍ୟ ବା ଜନସ୍ଥାନ ନିକଟର ଗୋଦାବରୀ କୂଳକୁ ଯାଇ ଖୋଜିଥିଲେ । ତେଣୁ ଶ୍ରୀରାମଚନ୍ଦ୍ରଙ୍କ ସହିତ କୋରାପୁଟର ବାଲି, ମାଟି, ଗୋଡି, ପଥର, ନଦୀ, ନାଳ ପରିଚିତ । ଆବଶ୍ୟକ ହେଲେ ଏହାର ଶାସ୍ତ୍ରଗତ ଭୌଗଳିକ ପ୍ରମାଣ ଉପସ୍ଥାପିତ କରିପାରିବି । ମୋ ଦେଶ ତଥା ଜାତିର ବିଭବକୁ ଗଳ୍ପ ମାଧ୍ୟମରେ ପ୍ରକାଶ କରି ଯଦି ଭୁଲ୍ କରିଥାଏ ତେବେ ମୁଁ କ୍ଷମା ମାଗି ନେଉଛି । ଇତି ।

ଅପଣଙ୍କର
**ଗଣେଶ ପ୍ରସାଦ ପରିଡା,**
କ୍ବାର୍ଟର ନଂ. ୬୭, ଟାଇପ–୪,
ଡେଲ୍ଟା କଲୋନି, ଭୁବନେଶ୍ୱର ।

ତା ୨୮.୮.୯୯

# କୃଷି ବିଭାଗ ତରଫରୁ ଚାଷୀମାନଙ୍କୁ ଦିଆଯାଉଥିବା ସୁବିଧା ସୁଯୋଗ

**ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା**

* ଉନ୍ନତ ଓ ଅଧିକ ଅମଳକ୍ଷମ ଧାନ ବିହନ ରିହାତି ଦରରେ ବିକ୍ରୟ କରାଯିବାର ବ୍ୟବସ୍ଥା ରହିଛି ।
* ୧୭୯ଟି ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନାଭୁକ୍ତ ବ୍ଲକରେ ଚାଷୀମାନଙ୍କୁ ଶତକଡା ୫୦ ଭାଗ ରିହାତି ଦରରେ ବିହନ, ସାର ରୋଗ ଓ କୀଟନାଶକ ଔଷଧ, ସ୍ପ୍ରେୟାର ଓ ଡ୍ରଷ୍ଟର, ପାଣିପମ୍ପ ଏବଂ ଉନ୍ନତ କୃଷି ଯନ୍ତ୍ରପାତି ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।
* ପାୱାର ଟିଲର କିଣିବା ପାଇଁ ସର୍ବୋଚ୍ଚ ୧୦,୦୦୦ ଟଙ୍କା ରିହାତିର ସୁବିଧା ମଧ୍ୟ ରହିଛି ।
* ସ୍ୱତନ୍ତ୍ର ଖାଦ୍ୟଶସ୍ୟ ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହେଉଥିବା ଜିଲ୍ଲାମାନଙ୍କରେ ଅଗଭୀର ସେଚକୂପ ଖୋଳିବା ପାଇଁ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କୁ ପ୍ରତ୍ୟେକ ସେଚକୂପ ପାଇଁ ୩,୦୦୦ ଟଙ୍କା ଆର୍ଥିକ ସାହାଯ୍ୟ ଦିଆଯିବ ।

**ଜାତୀୟ ଡ଼ାଲି ଉନ୍ନୟନ ଯୋଜନା**

* ଜାତୀୟ ଡ଼ାଲି ଉନ୍ନୟନ ଯୋଜନା ଅନ୍ତର୍ଭୁକ୍ତ ଜିଲ୍ଲାରେ ଚାଷୀମାନଙ୍କୁ ମାଗଣାରେ ମୁଗ, ବିରି, ହରଡ଼ ଇତ୍ୟାଦି ଡ଼ାଲି ଜାତୀୟ ବିହନ ଯୋଗାଇ ଦିଆଯାଉଛି । ୫୦ ହେକ୍ଟର ଏକ ଚକିଆ ଡ଼ାଲି ଜାତୀୟ ଫସଲର ପ୍ରଦର୍ଶନ କ୍ଷେତ୍ରମାନ କରାଯାଉଅଛି । ଏଥିରେ ସଂପୃକ୍ତ ଚାଷୀମାନଙ୍କୁ ଶତକଡା ୬୦ ଭାଗ ଛାଡରେ କେବଳ ଉନ୍ନତ ବିହନ ପାଇଁ, ସାର ଓ ଗୋଟିଏ ଥର ପାଇଁ ପୋକମରା ଔଷଧ ମାଗଣାରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।
* ପ୍ରତ୍ୟେକ ଏକଚକିଆ ପ୍ରଦର୍ଶନ କ୍ଷେତ୍ର ଅନ୍ତର୍ଭୁକ୍ତ ଚାଷୀମାନଙ୍କୁ ୧୦ ଗୋଟି ସିଞ୍ଚନ ଯନ୍ତ୍ର ୫୦ ଭାଗ ରିହାତିରେ ସର୍ବୋଚ୍ଚ ୩୦୦ ଟଙ୍କା ମୂଲ୍ୟରେ ବିକ୍ରୟ କରାଯିବାର ବ୍ୟବସ୍ଥା ହୋଇଛି ।
* ଯୋଜନାଭୁକ୍ତ ଜିଲ୍ଲାମାନଙ୍କରେ ଡାଲି ଜାତୀୟ ଫସଲକୁ ରୋଗ ପୋକ ଦାଉରୁ ରକ୍ଷା କରିବା ପାଇଁ ୫୦ ଭାଗ ଛାଡ଼ରେ କୀଟନାଶକ ଔଷଧ ବିକ୍ରୟର ସୁବିଧା କରାଯାଇଛି ।
* ଏକଚକିଆ ପ୍ରଦର୍ଶନ କ୍ଷେତ୍ର ଅନ୍ତର୍ଭୁକ୍ତ ଚାଷୀମାନଙ୍କଠାରୁ ଗୁଣାତ୍ମକ ବିହନ ବଜାର ଦର ଅପେକ୍ଷା କ୍ୱିଣ୍ଟାଲ ପ୍ରତି ଅଧିକ ୧୫୦ ଟଙ୍କା ଦେଇ କ୍ରୟ କରିବା ବ୍ୟବସ୍ଥା କରାଯାଇଅଛି ।

**ଜାତୀୟ ତୈଳବୀଜ ଉନ୍ନୟନ ଯୋଜନା**

* ଚିନାବାଦାମ, ଅଳସୀ, ରାଶି, ସୋରିଷ ଆଦି ତୈଳବୀଜ ରିହାତି ଦରରେ ବିକ୍ରି ହେବାର ବ୍ୟବସ୍ଥା ରହିଛି ।
* ଏହି ଯୋଜନା ଅନ୍ତର୍ଗତ ବ୍ଲକର କ୍ଷୁଦ୍ର ଏବଂ ନାମ ମାତ୍ର ଚାଷୀମାନଙ୍କୁ ୨ କେଜିଆ ରାଶି, ୧୫ କେଜିଆ ଚିନାବାଦାମ, ୨ କେଜିଆ ସୋରିଷ ଏବଂ ୧ କେଜିଆ ଅଳସୀ ବିହନ ପୁଡ଼ିଆ ମାଗଣାରେ ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି ।
* ଯୋଜନା ଅନ୍ତର୍ଗତ ବ୍ଲକମାନଙ୍କରେ ଚାଷୀମାନଙ୍କୁ ଏକଚକିଆ ତୈଳବୀଜ ଚାଷ ପାଇଁ ହେକ୍ଟର ପିଛା ୨୦୦ ଟଙ୍କା ମୂଲ୍ୟର ଚୂନ ଓ ଗନ୍ଧକ ଜାତୀୟ ସାର ଯୋଗାଇ ଦେବାର ବ୍ୟବସ୍ଥା ରହିଛି ।
* ଯୋଜନା ଅନ୍ତର୍ଭୁକ୍ତ ହିତାଧିକାରୀମାନଙ୍କୁ ଶତକଡା ୫୦ ଭାଗ ରିହାତି ଦରରେ ସ୍ପ୍ରେୟର (ସର୍ବୋଚ୍ଚ ୩୦୦ ଟଙ୍କା) ଛାଡ଼ ଏବଂ କୃଷି ଯନ୍ତ୍ରପାତି (ସର୍ବୋଚ୍ଚ ୨୦୦ ଟଙ୍କା) ରିହାତି ମୂଲ୍ୟରେ ଯୋଗାଇ ଦେବା ସହିତ ରିହାତି ମୂଲ୍ୟରେ କୀଟନାଶକ ଔଷଧ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି
* ଯୋଜନା ଅନ୍ତର୍ଭୁକ୍ତ ବ୍ଲକମାନଙ୍କରେ ଅଧିକ ଗୁଣ୍ଡୁଚା ବିକ୍ରୟ କେନ୍ଦ୍ର ସ୍ଥାପନ ପାଇଁ ବ୍ୟବସ୍ଥା ହୋଇଛି ।

**ସୋୟାବିନ ଚାଷ ଉନ୍ନୟନ ଯୋଜନା**

* ରିହାତି ମୂଲ୍ୟରେ ଉନ୍ନତ ସୋୟାବିନ ବିହନ ଜୀବାଣୁ କଲଚର ସହିତ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଛି ।
* ଚାଷୀଙ୍କ କ୍ଷେତ୍ରରେ ୬ କେଜି ଓଜନର ୩୦,୦୦୦ ବିହନ ପୁଡ଼ିଆ ପରୀକ୍ଷା ପାଇଁ ମାଗଣାରେ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଇଛି ।

* ସୋୟାବିନ ଚାଷୀମାନଙ୍କୁ ରକ୍ ଫସ୍‌ଫେଟ୍ ସାର ଶତକଡ଼ା ୫୦ ଭାଗ ରିହାତି ମୂଲ୍ୟରେ ବିକ୍ରୟର ବ୍ୟବସ୍ଥା ହୋଇଛି ।

**କପାଚାଷ ଉନ୍ନୟନ ଯୋଜନା**

* କେନ୍ଦ୍ରୀୟ ଚାଷ କରୁଥିବା ୧,୮୧୦ ହେକ୍ଟର କପାଚାଷ ଜମିରେ ହେକ୍ଟର ପିଛା ୫୦୦ ଟଙ୍କା ମୂଲ୍ୟର କୀଟନାଶକ ଔଷଧ ମାଗଣାରେ ଚାଷୀଙ୍କୁ ଯୋଗାଇ ଦେବା ପାଇଁ ବ୍ୟବସ୍ଥା କରାଯାଉଛି । ୨୦ ଜଣ ଆଗୁଆ କପାଚାଷୀଙ୍କୁ କପାଚାଷ ସମ୍ବନ୍ଧୀୟ ପ୍ରତ୍ୟକ୍ଷ ଜ୍ଞାନ ଆହରଣ ପାଇଁ ରାଜ୍ୟ ବାହାରକୁ ପଠାଯିବାର ବ୍ୟବସ୍ଥା ହୋଇଅଛି ।

**ଆଖୁଚାଷ ଉନ୍ନୟନ ଯୋଜନା**

* ଆଖୁଚାଷ ଉନ୍ନୟନ ଯୋଜନାରେ ଚାଷୀମାନଙ୍କୁ ୧୯୮୯-୯୦ ବର୍ଷପାଇଁ ୨୬୩ଟି ଯୌଗିକ ପୁଡ଼ିଆ ବଣ୍ଟନ ବ୍ୟବସ୍ଥା ରହିଛି । ଏଥିରେ ରାସାୟନିକ ସାର, ଉନ୍ନତ ଆଖୁ ବିହନ ଏବଂ ବିହନ ପରିବହନ ଖର୍ଚ୍ଚ ଅନ୍ତର୍ଭୁକ୍ତ ଅଛେ । ପ୍ରତ୍ୟେକ ପୁଡ଼ିଆର ମୂଲ୍ୟ ଏକ ହଜାର ଟଙ୍କା ଏବଂ ଏହା ୦.୦୨ ହେକ୍ଟର ପରିମିତ ଜମି ପାଇଁ ଉଦ୍ଦିଷ୍ଟ ।

**ସ୍ୱତନ୍ତ୍ର ଝୋଟ ଉନ୍ନୟନ ଯୋଜନା**

* ରିହାତି ଦରରେ ବିହନ ଯୋଗାଣ ବ୍ୟବସ୍ଥା ।
* ଶତକଡ଼ା ୫୦ ଭାଗ ରିହାତି ଦରରେ ରକ୍ ଫସ୍‌ଫେଟ୍ ସାର ବିକ୍ରୟର ସୁବିଧା କରାଯାଇଛି ।
* ଝୋଟ ସକଳ୍ପ ଏରିଆର ଚାଷୀମାନଙ୍କୁ ଧାଡ଼ି ବୁଣା ଯନ୍ତ୍ର, ଚକ୍ରବିଦା ଯନ୍ତ୍ର, ସିଞ୍ଚନ ଯନ୍ତ୍ର ଇତ୍ୟାଦି ରିହାତି ଦରରେ ବିକ୍ରୟର ବ୍ୟବସ୍ଥା ହୋଇଛି ।
* ଝୋଟ ଚାଷୀମାନଙ୍କୁ ଉନ୍ନତ ଚାଷ ପ୍ରଣାଳୀ ସମ୍ପର୍କରେ ତାଲିମ ଦେବାପାଇଁ ବ୍ୟବସ୍ଥା କରାଯାଇଛି ।
* ଝୋଟର ମୂଳ ବକଳ ନିଷ୍କାସନ କରିବା ପାଇଁ ମାଗଣାରେ ଛତ୍ରାକ ଫ୍ରେଙ୍ଗାଲ କଲ୍‌ଚର ଯୋଗାଇ ଦିଆଯାଉଛି ।

**ଆଦିବାସୀ ଓ ହରିଜନ ଚାଷୀମାନଙ୍କ ପାଇଁ ସ୍ୱତନ୍ତ୍ର କେନ୍ଦ୍ରୀୟ ଯୋଜନା**

* ୧ ହେକ୍ଟର ମକାଚାଷ ପ୍ରଦର୍ଶନ କ୍ଷେତ୍ର ପାଇଁ ୮୧୫ ଟଙ୍କା ମୂଲ୍ୟର ବିହନ, ସାର, ଔଷଧ ଇତ୍ୟାଦି ମାଗଣାରେ ଆଦିବାସୀ ଓ ହରିଜନ ଚାଷୀମାନଙ୍କୁ ଯୋଗାଇ ଦିଆଯିବାର ବ୍ୟବସ୍ଥା ରହିଛି ।
* ଆଦିବାସୀ ଓ ହରିଜନ ଚାଷୀଙ୍କ ପାଇଁ ୫୦୦ ଟଙ୍କାରୁ କମ୍ ମୂଲ୍ୟର ଯନ୍ତ୍ରପାତି ଉପରେ ଶତକଡ଼ା ୯୦ ଭାଗ ରିହାତି ଦିଆଯାଉଛି ।

**କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ପାଇଁ କେନ୍ଦ୍ରୀୟ ସାହାଯ୍ୟ ଯୋଜନା**

* ପ୍ରଦର୍ଶନ କ୍ଷେତ୍ର ପାଇଁ ଚାଷୀମାନଙ୍କୁ ଅଧ କେଜିଆ ମକା, ମାଣ୍ଡିଆ, ବାଜରା ଏବଂ ୧ କେଜିଆ ଜୁଆର ବିହନ ପୁଡ଼ିଆ ମାଗଣାରେ ଯୋଗାଇ ଦେବାର ବ୍ୟବସ୍ଥା ଅଛି ।
* ସମ୍ବଲପୁର, କଳାହାଣ୍ଡି, ବଲାଙ୍ଗୀର ଓ ଫୁଲବାଣୀ ଜିଲ୍ଲାର ମରୁଡ଼ି ପ୍ରପୀଡ଼ିତ ୩୯ଟି ବ୍ଲକରେ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କୁ ପମ୍ପସେଟ୍ କିଣିବା ଓ ତା'ର ବିଦ୍ୟୁତ୍‌କରଣ ପାଇଁ ପ୍ରତି ଚାଷୀଙ୍କୁ ୭,୫୦୦ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଦିଆଯିବ ।

**ରାଜ୍ୟ ଉଦ୍ୟାନ ବିଭାଗ ତରଫରୁ ଚାଷୀମାନଙ୍କୁ ଦିଆଯାଉଥିବା ସୁବିଧା ସୁଯୋଗ**

୧ । ସ୍ଥାନ (ଭେନ୍‌ସିଟ୍ରୁ) ପ୍ରଣାଳୀରେ ଆମ୍ବ ବଗିଚା କରୁଥିବା ଚାଷୀମାନଙ୍କୁ ଗାତ ଖୋଳା, ଗଛ ଲଗାଇବା ଓ ରକ୍ଷଣାବେକ୍ଷଣ ଖର୍ଚ୍ଚ ବାବଦକୁ ହେକ୍ଟର ପିଛା ୯୯୦ ଟଙ୍କା ପର୍ଯ୍ୟନ୍ତ ରିହାତି ଦିଆଯାଉଛି ।

୨ । ଏକଟକିଆ କଦଳୀ ଚାଷପାଇଁ ଉନ୍ନତ ମାନର କଦଳୀପୁଆ ରିହାତି ଦରରେ ପୁଅପ୍ରତି ୧୫ ପଇସାରେ ଚାଷୀମାନଙ୍କୁ ଯୋଗାଇ ଦିଆଯାଉଛି ।

୩ । ଚକ ଆକାରରେ ନଡ଼ିଆ ଚାଷ କଲେ ଚାଷୀଙ୍କୁ ହେକ୍ଟର ପ୍ରତି ୧୨ ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଦିଆଯାଇ ପରିଶୋଧ ସମୟରେ ୩ ହଜାର ଟଙ୍କା ରିହାତି ଦେବାର ବ୍ୟବସ୍ଥା ହୋଇଛି ।

୪ । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ହରିଜନ ଚାଷୀଙ୍କୁ ସେମାନଙ୍କ ବାଡ଼ିରେ ଲଗାଇବା ପାଇଁ ଜମିର ପରିମାଣକୁ ନେଇ ୧୦ଟି ନଡ଼ିଆଚାରା ଓ ଏଥିପାଇଁ ଆବଶ୍ୟକ ହେଉଥିବା ସାର ଓ ଔଷଧ ମାଗଣାରେ ଯୋଗାଇ ଦିଆଯାଉଛି ।

୫ । ଅନ୍ୟ ଜିଲ୍ଲାମାନଙ୍କରେ ଏହିଭଳି ଚାଷୀଙ୍କୁ ଅନ୍ୟ ଫଳଗଛ ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି ।

୬ । ଆଦିବାସୀ ଉନ୍ନୟନ ଯୋଜନାଭୁକ୍ତ ଅଞ୍ଚଳରେ ଛୋଟ ଛୋଟ ଫଳ ବଗିଚା ଉଠାଇବା ପାଇଁ ଗଛ ବା ଚାରା, ସାର ଓ ଔଷଧ ଇତ୍ୟାଦି ରିହାତି ମୂଲ୍ୟରେ ଯୋଗାଇ ଦିଆଯାଉଛି ।

୭ । ଏକ ସ୍ୱତନ୍ତ୍ର ଯୋଜନା ମାଧ୍ୟମରେ ଚକଦାରିଆ ଆଳୁଚାଷ ପାଇଁ ଆଳୁ ବିହନର ପରିବହନ ଓ ମୂଲ୍ୟ ଉପରେ କ୍ୱିଣ୍ଟାଲ ପିଛା ଟ ୧୦୦.୦୦ ରିହାତି ଦିଆଯାଉଛି ।

**ସମବାୟ ଋଣ ବିନିଯୋଗ**

୧ । ଚଳିତ ବର୍ଷ ଖରିଫ୍ ଋତୁରେ ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା ଅନ୍ତର୍ଗତ ବ୍ଲକମାନଙ୍କରେ ଚାଷୀମାନଙ୍କୁ ୧୩ କୋଟି ଟଙ୍କା ସ୍ୱଳ୍ପକାଳୀନ ଋଣ ଦିଆଯିବ । ସେହିଭଳି ସ୍ୱତନ୍ତ୍ର ଖାଦ୍ୟ ଉତ୍ପାଦନ ଯୋଜନା ଅନ୍ତର୍ଭୁକ୍ତ ବ୍ଲକରେ ଚାଷୀଙ୍କୁ ୩୮ କୋଟି ସ୍ୱଳ୍ପକାଳୀନ ଋଣ ଦେବାର ବ୍ୟବସ୍ଥା ହୋଇଛି ।

୨ । ରାଜ୍ୟରେ ତୈଳବୀଜ ଉତ୍ପାଦନ ବୃଦ୍ଧି କରିବା ପାଇଁ ଚଳିତ ବର୍ଷ ଜାତୀୟ ତୈଳବୀଜ ଉନ୍ନୟନ ଯୋଜନାରେ ଚାଷୀମାନଙ୍କୁ ୨ କୋଟି ଟଙ୍କା ଋଣ ଦେବାର ବ୍ୟବସ୍ଥା କରାଯାଇଛି ।

୩ । କୃଷିର ଉନ୍ନତି ପାଇଁ ବିଭିନ୍ନ ଉଦ୍ଦେଶ୍ୟରେ ଚଳିତ ସମବାୟ ବର୍ଷ ଶେଷସୁଦ୍ଧା ଚାଷୀମାନଙ୍କୁ ୧୦ କୋଟି ଦୀର୍ଘକାଳୀନ ଋଣ ଦେବାର ବ୍ୟବସ୍ଥା ହୋଇଛି ।

୪ । ୩୧-୩-୧୯୮୮ ତାରିଖ ସୁଦ୍ଧା ଖିଲାପ କରିଥିବା ୫୬,୩୯୬ ଜଣ ଚାଷୀଙ୍କୁ ୩୧-୩-୧୯୮୯ ତାରିଖ ମଧ୍ୟରେ ଋଣ ପରିଶୋଧ କରିବା ପାଇଁ ସୁବିଧା ଦିଆଯାଇ, ସେମାନଙ୍କୁ ପୁଣି ଥରେ ଋଣ ପାଇବା ପାଇଁ ସକ୍ଷମ କରାଯିବା ସଙ୍ଗେ ସଙ୍ଗେ, ସୁଧ ଉପରେ ଶତକଡ଼ା ୫ ଭାଗ ହିସାବରେ ମୋଟ ୭୨ ଲକ୍ଷ ଟଙ୍କା ରିହାତି ଦିଆଯାଇଛି । ସେହିଭଳି ଭୂ-ଉନ୍ନୟନ ବ୍ୟାଙ୍କମାନଙ୍କରେ ୫,୩୪୩ ଜଣ ଖିଲାପି

ଋଣୀଙ୍କଠାରୁ ମଧ୍ୟମ ଓ ଦୀର୍ଘକାଳୀନ ଋଣ ଆଦାୟ କରାଯାଇ, ସେମାନଙ୍କୁ ୧୩ ଲକ୍ଷ ୨୧ ହଜାର ଟଙ୍କା ରିହାତି ଦିଆଯାଇଛି ।

୫ । ଶସ୍ୟ ବୀମା ଯୋଜନା ବାବଦରେ ୧୯୮୭ ମସିହା ଖରିଫ୍ ଓ ରବି ଋତୁରେ ମୋଟ ୧୬,୫୦୪ ଜଣ ଋଣୀଙ୍କୁ ୨୨ କୋଟି ୭୯ ଲକ୍ଷ ଟଙ୍କା ଶସ୍ୟ ହାନିଜନିତ କ୍ଷତି ପୂରଣ ଦିଆଯାଇଛି ।

୧୯୮୮ ବର୍ଷର ସମ୍ପୂର୍ଣ୍ଣ ଶସ୍ୟହାନୀ ବିବରଣୀ ମିଳିଲାପରେ କ୍ଷତିଗ୍ରସ୍ତ ଋଣୀଙ୍କୁ ବୀମା କ୍ଷତିପୂରଣ ଦିଆଯିବ ।

୬ । ଗତ ସମବାୟ ବର୍ଷ ସୁଦ୍ଧା ୨୫୦ ଟଙ୍କା ପର୍ଯ୍ୟନ୍ତ ଋଣ ପରିଶୋଧ କରିପାରି ନଥିବା ୫୨ ହଜାର ୭ ଶହ ୫୪ ଜଣ ଆଦିବାସୀ ସଭ୍ୟଙ୍କ ପାଇଁ ସରକାରଙ୍କ ତରଫରୁ ୬୦ ଲକ୍ଷ ୪୨ ହଜାର ଟଙ୍କା ସମ୍ପୃକ୍ତ ବ୍ୟାଙ୍କମାନଙ୍କରେ ପୈଠ କରାଯାଇ ସେମାନଙ୍କୁ ପୁନରାୟ ଋଣ ଗ୍ରହଣ ପାଇଁ ସୁଯୋଗ ଦିଆଯାଇଛି ।

୭ । ୧୨୬ ଗୋଟି ଲ୍ୟାମ୍ପସ୍‌ରେ ବିଭାଗୀୟ ସରକାରୀ କର୍ମଚାରୀଙ୍କୁ ପରିଚାଳନା ନିର୍ଦ୍ଦେଶକଭାବେ ନିଯୁକ୍ତ କରାଯାଇଛି ଓ ଅବଶିଷ୍ଟ ୯୭ଟି ଲ୍ୟାମ୍ପସ୍‌କୁ ୧୯୮୭-୮୮ ବର୍ଷଠାରୁ ୧୦ ହଜାର ଟଙ୍କା ଲେଖାଏଁ ଅନୁଦାନ ଦିଆଯାଇଛି । ପ୍ରତ୍ୟେକ ଲ୍ୟାମ୍ପସ୍ ପାଇଁ ଗୋଦାମ ଘର ମଧ୍ୟ ନିର୍ମାଣ କରାଯାଉଛି ।

**ସମବାୟ ବିକ୍ରିବଟା**

୧ । ୧୯୮୮-୮୯ ବର୍ଷରେ ସମବାୟ ବାଣିଜ୍ୟ ସମିତିଗୁଡ଼ିକ ୨୦ କୋଟି ଟଙ୍କା କାରବାର କରିବା ପାଇଁ ଲକ୍ଷ୍ୟ ରଖାଯାଇଛି ।

୨ । କୃଷକମାନଙ୍କୁ ଆଖୁ ଚାଷରେ ଅଧିକ ଲାଭ ଦେବା ପାଇଁ ଅସ୍କା ଏବଂ ବରଗଡ଼ଠାରେ ଦୁଇଟି ସମବାୟ ଚିନି କାରଖାନା ବସା ଯାଇଥିଲା । ୧୯୮୮-୮୯ ମସିହାରୁ ନୟାଗଡ଼ ଓ ବଡ଼ମ୍ବାଠାରେ ଆଉ ଦୁଇଟି ଚିନି କାରଖାନା ନିର୍ମିତ କରାଯାଇଛି । ଆସ୍କା ଚିନି କାରଖାନାର ସମ୍ପ୍ରସାରଣ କାର୍ଯ୍ୟ ମଧ୍ୟ ସରକାର ହାତକୁ ନେଇଛନ୍ତି ।

୩ । ଜାତୀୟ ସମବାୟ ନିଗମ, ନୂଆଦିଲ୍ଲୀ ଏବଂ ରାଜ୍ୟ ସରକାରଙ୍କ ମିଳିତ ସହଯୋଗରେ ବରଗଡ଼ଠାରେ ଥିବା କୁସ୍ମା ଓ ଶାଳମଞ୍ଜି ତେଲ ଉତ୍ପାଦନ କାରଖାନାର ପୁନରୁଦ୍ଧାର କରାଯାଇଛି । ବର୍ତ୍ତମାନ ଏହାର ଉତ୍ପାଦନ କ୍ଷମତା ଦୈନିକ ୩୦ ଟନରୁ ୫୦ ଟନକୁ ବୃଦ୍ଧି ପାଇଛି ।

୪ । ବରଗଡ଼ଠାରେ ମୋଟ ୩୩୧ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ଏକ ବୃହତ ତେଲ ଉତ୍ପାଦନ କାରଖାନା ପ୍ରତିଷ୍ଠା କରାଯାଇଛି । ଏହି କାରଖାନାରେ ବର୍ତ୍ତମାନ ଦୈନିକ ୨୦ ମେଟ୍ରିକ୍ ଟନ ବାଦାମ ତେଲ ବିଶୋଧନ କରାଯାଇ ପାରୁଛି ।

୫ । ବାଲିଆପାଳଠାରେ ବାସଚ୍ୟୁତ ଅଧିବାସୀଙ୍କୁ କର୍ମ ଯୋଗାଇ ଦେବାପାଇଁ ଏକ ବନସ୍ପତି କାରଖାନା ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ରଖାଯାଇଛି ।

ସେହିଭଳି କେନ୍ଦ୍ରାପଡ଼ାଠାରେ ଏକ ଛୋଟ କାରଖାନା ପ୍ରତିଷ୍ଠା କରାଯିବା ପାଇଁ ଏକ ପ୍ରସ୍ତାବ କେନ୍ଦ୍ର ସରକାରଙ୍କର ବିଚାରାଧୀନ ଅଛି ।

୬ । ଆଳୁ, ତେନ୍ତୁଳି ଓ ପନିପରିବା ସଂରକ୍ଷଣ ପାଇଁ ରାଜ୍ୟରେ ୧୬ଟି ସମବାୟ ଶୀତଳ ଭଣ୍ଡାର ପ୍ରତିଷ୍ଠା କରାଯାଇଛି । ଏଗୁଡ଼ିକର ମୋଟ ସଂରକ୍ଷଣ କ୍ଷମତା ୨୭,୭୦୦ ମେଟ୍ରିକ ଟନ ।

ଡ଼ଃ ହରେକୃଷ୍ଣ ମହତାବଙ୍କ ପ୍ରତିମୂର୍ତ୍ତିରେ ମୁଖ୍ୟମନ୍ତ୍ରୀ ମାଲ୍ୟାର୍ପଣ କରୁଛନ୍ତି



OGP—MP-VI (I. & P. R.) 26— 6,000—1-9-1989

